# ସ୍ପୁଟ୍ନିକ୍

( ବୈଜ୍ଞାନିକ ଉପନ୍ୟାସ )

—ଲେଖକ—

ଡକ୍ଟର **ଗୋକୁଳାନନ୍ଦ ମହାପାତ୍ର**

ଅଧ୍ୟାପକ, ରେଭେନ୍‌ସା କଲେଜ

କଟକ

—ପ୍ରକାଶକ—

**ବିଜୟଶ୍ରୀ ସ୍ମୃତି ପାଠାଗାର**

ଭଦ୍ରକ

# SPUTNIK

A Science fiction written on the mysterious back-ground of enchanting sky happenings and revelations and space travel. Scientific imaginations in this book will keep the readers spell-bound till they finish the reading of the story. Suspense, romance, dreams will keep everybody amused and its story element will thrill every mind.


*Written by* :

**Dr. Gokulananda Mahapatra**

Professor of Chemistry, Ravenshaw College Cuttack.





*Cover designed by* :

**Asit Mukherjee,** Cuttack-2

*Printed at* ;

**Brajendra Press,** Cuttack-1

*Published by* :

**Bijoy Smruti Pathagar,**

Bhadrak.

ମୂଲ୍ୟ—ଆଠ ଟଙ୍କା ମାତ୍ର





ବନ୍ଧେଇ—ଅତିରିକ୍ତ ଏକଟଙ୍କା

Available at

1. **Grantha Mandir,**
   Binodbehari Cuttack-2
2. **New Students' Store,**
   Binodbehari, Cuttack-2
3. **J Mohapatra and Co.**
   Nimchouri, Cuttack-2
4. **Grantha Niketan**
   College Road, Bhadrak.

# ଉତ୍ସର୍ଗ



ତିରୋଧାନ ଦିବସ ତା ୧୯ । ୮ । ୧୯୬୭

ପରମାରାଧ୍ୟା ୰ ମାତୃଦେବୀଙ୍କ ଅମର ସ୍ମୃତି

ଉଦ୍ଦେଶ୍ୟରେ

ଅର୍ପିତ

ଲେଖକ

# ପଦେ ଅଧେ

ବହୁ ବୈଜ୍ଞାନିକ ଏବେ ବି ସ୍ୱୀକାର କରନ୍ତି, ମଣିଷର ସର୍ବଶ୍ରେଷ୍ଠ କୃତି ତଥା ବିଜ୍ଞାନର ଶ୍ରେଷ୍ଠତମ ଉଦ୍ଭାବନ ହେଉଛି 'ସ୍ପୁଟ୍‌ନିକ' । ମଣିଷ ବିଜ୍ଞାନଜଗତରେ ଅସଂଖ୍ୟ ଆବିଷ୍କାର ଓ ଉଦ୍ଭାବନ କରି ପୃଥିବୀକୁ ଯଥେଷ୍ଟ ଆଗେଇ ନେଇଛି ସତ; କିନ୍ତୁ କୌଣସି ଆବିଷ୍କାର କି ଉଦ୍ଭାବନ ସ୍ପୁଟ୍‌ନିକ ବା 'କୃତ୍ରିମ ଚନ୍ଦ୍ର'ର ସମକକ୍ଷ ହୋଇ ପାରିନି । ବିଜ୍ଞାନର ସାହାଯ୍ୟ ନେଇ ପରମାଣୁ ଶକ୍ତି ଆଜି ବିଜ୍ଞାନ ଜଗତରେ ଏକ ଅପୂର୍ବ ଯୁଗ ସୃଷ୍ଟି କରିଛି, କଂପ୍ୟୁଟର ଆଜି ନାନା ଅସମ୍ଭବ କଥାକୁ ସମ୍ଭବ କରିପାରୁଛି, ଜୀବ-ଜନ୍ମର ରହସ୍ୟ ଆବିଷ୍କାର ଭଗବାନଙ୍କ ଅସ୍ତିତ୍ୱକୁ ଦୋହଲାଇ ଦେବା ଉପରେ, ସର୍ବଶକ୍ତିମାନ୍ ପ୍ରକୃତି ମଣିଷର ଦାସତ୍ୱ ସ୍ୱୀକାର କରି ମଣିଷର ସେବା କରିବାକୁ ଆଗଭର; କିନ୍ତୁ ସେ ସବୁକୁ ପଛରେ ପକାଇ ଦେଇ ବିଜ୍ଞାନର ବିଜୟଦୁନ୍ଦୁଭି ବଜାଇ ଆଗେଇ ଚାଲିଛି ସ୍ପୁଟ୍‌ନିକ, ଯା'ର ଶେଷ ରୂପାୟନ ହୋଇଛି ମଣିଷର ଚନ୍ଦ୍ରପୃଷ୍ଠରେ ଅବତରଣ । ମହାକାଶ ସମ୍ବନ୍ଧୀୟ ଅସଂଖ୍ୟ ପ୍ରଶ୍ନବାଚୀକୁ କୋଳରେ ଧରି ପାଦ ବଢ଼ାଇ ଚାଲିଛି ସ୍ପୁଟ୍‌ନିକ, ବିଶ୍ୱପୃଷ୍ଠରେ ଏକ ନୂତନ ଯୁଗର ସନ୍ଧାନ ଦେବା ଆଶାରେ । ଯେଉଁ ମହାକାଶ ଅଭିଯାନକୁ ବିଜ୍ଞାନଜଗତ ଦିନେ ଅସମ୍ଭବ କହି ପ୍ରତ୍ୟାଖ୍ୟାନ କରିଦେଇଥିଲା, ଆଜି ସେହି ଅସମ୍ଭବକୁ ସମ୍ଭବ କରିପାରିଛି ସ୍ପୁଟ୍‌ନିକ ।

'ସ୍ପୁଟ୍‌ନିକ' ଏକ ଉପନ୍ୟାସ ହେଲେହେଁ ଏହା ହେଉଛି ଆଗାମୀ ଯୁଗର ରୂପରେଖ । ଆସନ୍ତା କେଇବର୍ଷ ଭିତରେ ମଣିଷ ଚନ୍ଦ୍ର ଅଭିଯାନ ବଳରେ କ'ଣ କ'ଣ କରିବାକୁ ଯାଉଛି, ତାହାକୁ ରୂପାୟିତ କରୁଛି ସ୍ପୁଟ୍‌ନିକ ଏହି ଉପନ୍ୟାସ ଜରିଆରେ । ମଣିଷ ଚନ୍ଦ୍ରପୃଷ୍ଠରେ କେମିତି ବସତି ସ୍ଥାପନ କରିବାକୁ ଯାଉଛି, ତହିଁର ହୃଦୟଗ୍ରାହୀ ବର୍ଣ୍ଣନା ଯେ କୌଣସି ପାଠକର ଚିନ୍ତାରାଜ୍ୟକୁ ଦୋହଲାଇ ଦେବ । ବୈଜ୍ଞାନିକମାନଙ୍କ ଅଭିଧାନରେ ଅସମ୍ଭବ ବୋଲି ଶବ୍ଦଟାଏ ନାହିଁ, ଏହାକୁ ପ୍ରତିପାଦନ କରୁଛି ସ୍ପୁଟ୍‌ନିକ ଏହି ଉପନ୍ୟାସ ମାଧ୍ୟମରେ ।

ଆଜକୁ ବହୁ ବର୍ଷ ତଳେ 'ସ୍ପୁଟ୍‌ନିକ' ନାମରେ ଆଉ ଏକ ଉପନ୍ୟାସ ମୋ ଦ୍ୱାରା ରଚିତ ହୋଇଥିଲା, ଯାହା ବର୍ତ୍ତମାନ ସଂସ୍କରଣ ବାହାରେ । ଏହି ଉପନ୍ୟାସରେ ଗଳ୍ପର ସେହି କଙ୍କାଳକୁ ରଖାଯାଇଥିଲେହେଁ ଏହାର ରକ୍ତ, ମାଂସ, ଚର୍ମ ଆଦିକୁ ସଂପୂର୍ଣ୍ଣ ବଦଳାଯାଇ ନୂତନ ରୂପରେ ସଜା-ଯାଇଛି; ଫଳରେ ଜନ୍ମ ନେଇଛି ଏହି ନୂତନ ଉପନ୍ୟାସ 'ସ୍ପୁଟ୍‌ନିକ'— ପୁରାତନ ଉପନ୍ୟାସର ନୂତନ ପ୍ରସ୍ଥ ଆଖ୍ୟାନେଇ । ଉପନ୍ୟାସର ନାୟକ, ନାୟିକା ରହିଯାଇଛନ୍ତି, କିନ୍ତୁ ବଦଳି ଯାଇଛି ସେମାନଙ୍କ ବିରହଜନିତ ମିଳନର ପରିସ୍ଥିତି । ଉପନ୍ୟାସର ବର୍ଣ୍ଣନା-ଶୃଙ୍ଖଳା, ତଥା ବିଷୟବସ୍ତୁକୁ ଅତ୍ୟଧିକ ପରିମାଣରେ ପରିବର୍ତ୍ତନ କରାଯାଇ ଅଧିକ ଯୁଗୋପଯୋଗୀ କରାଯାଇଛି । ଏହି ଉପନ୍ୟାସଟି ପାଠକପାଠିକାମାନଙ୍କୁ ସାଧାରଣ ଉପନ୍ୟାସ ଭଳି ଆନନ୍ଦ ଦେବା ସଙ୍ଗେ ସଙ୍ଗେ ଜଟିଳ ଜ୍ଞାନକୁ ସରଳ କରି ବିତରଣ କରିବାରେ ସହାୟକ ହେବ ବୋଲି ଆଶା । ନାନା ଦିଗରୁ ଦେଖିଲେ, ସେ ଉପନ୍ୟାସ ଓ ଏ ଉପନ୍ୟାସ ଭିତରେ ଆକାଶପାତାଳ ପ୍ରଭେଦ । ନାମ ସମାନ ଥାଇ ବିଷୟବସ୍ତୁ ବଦଳି ଯାଇଥିବାରୁ ଏହାକୁ ଏକ ନୂତନ ଉପନ୍ୟାସ ଭଳି ଗ୍ରହଣ କରିବାକୁ ଅନୁରୋଧ । ମହାକାଶ ତଥା ଚନ୍ଦ୍ରଲୋକ ଅଭିଯାନ ସମ୍ବନ୍ଧୀୟ ବହୁ ଜଟିଳ ଜ୍ଞାନକୁ ଏହି ଉପନ୍ୟାସଟି ସରଳ ଭାଷା ଓ ସାବଲୀଳ ଭଙ୍ଗୀରେ ପ୍ରଚାର କରିଥିବାରୁ ଏହା ସମସ୍ତଙ୍କ ଦ୍ୱାରା ଆଦୃତ ହେବାର ଆଶା ।

। ଇତି ।

ଦୋଳମୁଣ୍ଡାଇ,
ମହାଷ୍ଟମୀ
ତା ୨୩ । ୧୦ । ୭୪

ବିନୀତ
**ଲେଖକ**



## ( ଏକ )



ରବିବାର ସକାଳ ଆଠଟା । ଅଧ୍ୟାପକ ପଟ୍ଟନାୟକ ନିଜ ବାସଭବନର ପଢ଼ାଘରେ ବସି ଏକ ଗଣନା କରିବାରେ ବ୍ୟସ୍ତ । ଗଣନାଟି ଏତେ ଜଟିଳ ଯେ ଗତ ସାହାନ୍ତାରୁ ଉଠି ଚେଷ୍ଟା କରି ମଧ୍ୟ ସେପର୍ଯ୍ୟନ୍ତ କୃତକାର୍ଯ୍ୟ ହୋଇପାରି ନ ଥାଆନ୍ତି । ରୁଷୀୟମାନେ ପୃଥିବୀ ଚାରିପାଖରେ ପରିଭ୍ରମଣ କରିବାପାଇଁ ମହାଶୂନ୍ୟରେ ଯେଉଁ ସ୍ପୁଟ୍‌ନିକ୍ ସୃଷ୍ଟି କରିଥିଲେ, ସେହି ସ୍ପୁଟ୍‌ନିକ୍‌ର ବେଗଉପରେ ପୃଥିବୀର ବିଷୁବରେଖା ସହିତ ସ୍ପୁଟ୍‌ନିକ୍‌ର ଗତିପଥ ସୃଷ୍ଟି କରୁଥିବା କୋଣର କୌଣସି ସମ୍ପର୍କ ଅଛି କି ନାହିଁ, ଗଣନାଦ୍ୱାରା ସ୍ଥିର କରିବା ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ । ଗଣିତ ବିଜ୍ଞାନର ଜଟିଳତମ ବାଲିଷ୍ଟିକ୍

ପରିଚ୍ଛେଦରେ ଯେତେ ସମୀକରଣ ଥିଲା, ସେସବୁକୁ ଗୋଟିକପରେ ଗୋଟିଏ ପ୍ରୟୋଗ କରି ସେ ପ୍ରାଣାନ୍ତକ ହୋଇପଡ଼ିଲେଣି ତଥାପି ସମାଧାନର କୌଣସି ଅନୁକୂଳ ପାଉ ନ ଥାନ୍ତି । ନିଜର ଅସମର୍ଥତାରେ ବଡ଼ ଲଜ୍ଜିତ ହୋଇ ସେ ଗଣନା ବନ୍ଦ କରିଦେଇ ଭାବିବାକୁ ଲାଗିଲେ । ଏହି ସମୟରେ ହଠାତ୍ ପଢ଼ାଘର ଭିତରକୁ ପଶିଆସିଲେ ସ୍ତ୍ରୀ ଅମିତା ଦେବୀ । କୋଳରେ ତାଙ୍କର ବର୍ଷକର ପୁଅ ବାବୁ । ଅଧ୍ୟାପକଙ୍କ ଟେବୁଲ ପାଖକୁ ଚାଲିଆସି କହିଲେ, "ଜୀବନରେ ଆଉ କିଛି ଅଛି ନା, କେବଳ ଦିନରାତି ଏହି ଅଙ୍କ କଷା ହିଁ ଲାଗିଥିବ ? ଗାଧୁଆପାଧୁଆ, ଖିଆପିଆ ଆଦି କ'ଣ କିଛି ହେବନି ଆଜି ? ତୁମକୁ ଯେ କେମିତି ସବୁବେଳେ ଏହି ଅଙ୍କ କଷିବାକୁ ଭଲ ଲାଗେ, ମୁଁ ଧାରଣା କରିପାରୁନି ।"

"ସେହି ପ୍ରଶ୍ନ ତୁମେ ନିଜକୁ ନ ପଚାରି ମୋତେ ପଚାରି ଲାଭ କ'ଣ ମିତା ?" ହସି ହସି ଉତ୍ତର କଲେ ଅଧ୍ୟାପକ—"ତୁମେ ତ ଦିନେ ଏମ୍. ଏସ୍‌ସି ପଢ଼ିବା ଝୁଙ୍କରେ ବିବାହ ଦିନ ଗଡ଼ାଇ ଦେବାକୁ ଜିଦ୍ ଧରି କାନ୍ଦିଥିଲ । ସେତେବେଳେ ତୁମେ ଦିନ-ରାତି ଖାଲି ଅଙ୍କ କଷିବାରେ କେମିତି ବିତାଇ-ଦେଉଥିଲ, କହିଲ ? ଆଜି ତୁମକୁ ମୋ ଅଙ୍କ କଷିବାଟା ଆଶ୍ଚର୍ଯ୍ୟ ଲାଗୁଛି, ନୁହେଁ ?"

"ବାଆରେ, ମୋର ସେତେବେଳେ ପରୀକ୍ଷା ଦେବାର ଯେ ଝୁଙ୍କ୍ ଥିଲା ? ଆଜି ତୁମର କେଉଁ ଝୁଙ୍କ୍‌ଟା ଅଛି ଶୁଣେ ? ଗଣିତରେ ତ ଗବେଷଣା କରି ପି. ଏଇଚ୍. ଡି. ଡିଗ୍ରୀ, ଡି. ଏସ୍‌ସି. ଡିଗ୍ରୀ ପାଇଲ, ଭାରତର ଶ୍ରେଷ୍ଠ ଗଣିତଜ୍ଞ ଭାବରେ ସମ୍ମାନ ଲାଭ କରି ବାଲିଷ୍ଟିକ୍ ପରିଚ୍ଛେଦରେ ପୃଥିବୀର ଅଦ୍ୱିତୀୟ ବିଶେଷଜ୍ଞ ଭାବରେ ଖ୍ୟାତି ଅର୍ଜନ କଲ । ତଥାପି ବି ତୁମର ଜ୍ଞାନତୃଷ୍ଣା କ'ଣ ମେଣ୍ଟିଲା ନାହିଁ ? ପିଲାଙ୍କ ଭଳି ସକାଳୁ ଉଠି, ନ ଖାଇ ନ ପିଇ ଅଙ୍କ କଷିବାରେ ଲାଗିଯାଇଛ ?"

"କ'ଣ କରିବି ମିତା, ପାହାନ୍ତାରୁ ଉଠି ଏହି ଅଙ୍କକଷାରେ ଲାଗିଯାଇଛି ସତ; କିନ୍ତୁ କାହିଁ କ'ଣ କୃତକାର୍ଯ୍ୟ ହେଲିଣି ଏପର୍ଯ୍ୟନ୍ତ ? ସକାଳୁ ଆଜି କାହା ମୁହଁ ଚାହିଁଥିଲି କେଜାଣି, ଦିନ ଆସି ଆଠଟା ବାଜିଲାଣି, ତଥାପି ବି ଗଣନାର ଶେଷମୁଣ୍ଡରେ ମୁଁ ପହଞ୍ଚି ପାରିଲିନି । ତୁମେ ଟିକିଏ

ଦେଖିଲ ମିତା, ରୁଷୀୟମାନେ ମହାଶୂନ୍ୟରେ ଯେଉଁ ସ୍ପୁଟ୍‌ନିକ୍ ସୃଷ୍ଟି କରିଥିଲେ, ସେଇ ସ୍ପୁଟ୍‌ନିକ୍‌ର ବେଗ ସହିତ ବିଷୁବରେଖା ସହିତ ତାହାର କକ୍ଷ ସୃଷ୍ଟି କରୁଥିବା କୋଣର କ'ଣ କୌଣସି ଗାଣିତିକ ସମ୍ପର୍କ ନାହିଁ ? ତୁମର ମନେ ଅଛି ନା, ସେଦିନ ଆମେ ଯେଉଁ ରୁଷୀୟ ଗାଣିତିକ ପତ୍ରିକାଟି ପଢୁଥିଲେ, ଏ ଦୁଇଟି ଭିତରେ ଗାଣିତିକ ସମ୍ପର୍କ ଅଛି ବୋଲି ସେହି ପତ୍ରିକା ପତ୍ର ପ୍ରକାଶ କରିଥିଲି ? କିନ୍ତୁ କାହିଁ, ମୁଁ ତ ଏତେ ଘଣ୍ଟା ଧରି ବାଲିଷ୍ଟିକ୍ ପରିଚ୍ଛେଦର ସବୁ ସମୀକରଣ ପ୍ରୟୋଗ କରି ଶେଷ କରିସାରିଲିଣି, କୌଣସି ସମ୍ପର୍କଠାରେ ତ ଏପର୍ଯ୍ୟନ୍ତ ପହଞ୍ଚିପାରିଲି ନି ?"

"ହାଁ, ଏତିକି ବୁଦ୍ଧି କ'ଣ ତୁମ ମୁଣ୍ଡକୁ ପଶୁନି ? ତୁମେ ଯେଉଁ ବାଲିଷ୍ଟିକ୍ ପରିଚ୍ଛେଦର ସମୀକରଣ ବ୍ୟବହାର କରିଯାଉଛ, ସେଗୁଡ଼ାକ ପତ୍ର ଏଠାରେ ମୋଟେ ଖାଟିବ ନାହିଁ ବୋଲି ସେମାନେ ପ୍ରକାଶ କରିଛନ୍ତି । ଏ କଥା କ'ଣ ତୁମେ ପୂରାପୂରି ଭୁଲିଗଲଣି ? ସେମାନେ ପତ୍ର ଏହି ସ୍ପୁଟ୍‌ନିକ୍ ପାଇଁ ନୂତନ ସମୀକରଣ ଓ ଗଣନା ପ୍ରଣାଳୀ ବାହାର କରିଛନ୍ତି ସେଗୁଡ଼ିକୁ ବ୍ୟବହାର କଲେ ସିନା ତୁମେ ସେ ସମ୍ପର୍କ ବାହାର କରିପାରିବ ।"

"ଆରେ ହଁ, ସତେ ତ, ମୋର ସେ କଥା ମୋଟେ ଖିଆଲ ନାହିଁ । ମୁଁ ଯେ ନିର୍ବୋଧଙ୍କ ଭଳି ପାହାନ୍ତାରୁ ଉଠି ଗଣନାରେ ଲାଗିଯାଇଛି, ତାହା ଆଉ କେଉଁଥିପାଇଁ ? ଯାହା କୁହ ମିତା, ତୁମ ବୁଦ୍ଧିଟା ଅତି ତୀକ୍ଷ୍ଣ । ତୁମେ ଯଦି ଘର-ସଂସାରରେ ନ ପଶି ଗବେଷଣାରେ ପଶିଥାନ୍ତ, ତେବେ ପୃଥିବୀର ଜଣେ ଶ୍ରେଷ୍ଠ ବୈଜ୍ଞାନିକ ଭାବରେ ନିଶ୍ଚୟ ଖ୍ୟାତି ଅର୍ଜନ କରିଥାନ୍ତ । ଭାବ, ଭାରତରେ ଠିକ୍ ମ୍ୟାଡାମ୍ କ୍ୟୁରି ।"

"ଥାଉ ଥାଉ, ତୁମର ସେ ମନରଖା କଥା । ମୁଁ ଯଦି ମେଡେମ୍ କ୍ୟୁରି ହୋଇଥାନ୍ତି, ତେବେ ତୁମେ ? ପିଏରି ? ତା ହେଲେ ଛୁଆପିଲାଙ୍କ ଭାର କିଏ ନେଇଥାନ୍ତା କହିଲ ? ତୁମେ ନା ମୁଁ ?"

ଏତିକି କହି ଅମିତା ଦେବୀ ଗ୍ରେଟ ପୁଅକୁ ଅଧ୍ୟାପକଙ୍କ ଟେବୁଲ୍ ଉପରେ ବସାଇଦେଲେ ।

ଅଧ୍ୟାପକ ପୁଅର ଗାଲ ଟିପିଦେଇ ପୁଅ ମୁହଁ ପାଖରେ ମୁହଁ ଲଗାଇ କହିଲେ, "ଆଉ, ତୁ କ'ଣ ହୋଇଥାନ୍ତୁରେ ବାବୁ ! ମ୍ୟାଡାମ୍ କ୍ୟୁରିଙ୍କର

ତ ପୁଅ ନ ଥିଲା । ଝିଅଟିଏ ହୋଇଥିଲେ ହୋଇଥାନ୍ତୁ, ଆଇରିନ୍, ତାଙ୍କ ଗେହ୍ଲା ଝିଅ ।”

“ବେଶ୍, ପୁଣି ପୁଅ ସାଙ୍ଗରେ ଖେଳରେ ଲାଗିଯାଅ । କିଛି ଦାୟିତ୍ୱ ଆଜ ମୁଣ୍ଡକୁ ନିଅ ନା । ମୁଁ ଖାଲି ହନ୍ତସନ୍ତ ହୋଇ ମରୁଥାଏ ।”

ଅଧ୍ୟାପକ ସ୍ତ୍ରୀଙ୍କ କଥାପ୍ରତି ଭଲେ ମାତ୍ର କାନ ନ ଦେଇ ପୁଅ ସହିତ ଆଗଭଳି ଖେଳିବାରେ ଲାଗିଗଲେ । ପୁଅକୁ ଦୁଇ ହାତରେ ଉପରକୁ ଉଠାଇ ନଚାଇ ନଚାଇ କହିଲେ, “ତୋ ବୋଉ କ’ଣ କହୁଛି, ଜାଣିଛୁ ରେ ବାବୁ ? ତୋ ବୋଉ କହୁଛି, ତୁ ଗୋଟାଏ ରଜାଘରେ ଜନ୍ମ ହୋଇଥାନ୍ତୁ କି ସେ ରାଣୀ ହୋଇ ଶହ ଶହ ପୋଇଲି-ପରିବାରୀଙ୍କ ଭିତରେ ତୋ ଖବର ବୁଝୁଥାନ୍ତା । ରଜାଘର ନ ହୋଇଥିଲେ ଅନ୍ତତଃ ଆଇ. ଏ. ଏସ୍. ଘରଟାଏ ହୋଇଥାନ୍ତା କି ? ସରକାରୀ ପିଅନ, ଚପରାସୀଙ୍କୁ ନିଜ ଘରେ ଖଟାଇ ରଜାଘର ଭଳି ଚଳୁଥାନ୍ତା । ଆଜିକାଲି ରାଜାମାନେ ନାହାନ୍ତି ବୋଲି ତାଙ୍କ ସ୍ଥାନ ପରି ମାଡ଼ିବସିଛନ୍ତି ଏହି ଆଇ. ଏ. ଏସ୍. ମାନେ । ସେ ବିଚାରି ମାଷ୍ଟ୍ରିଆ ଘରକୁ ଆସି ଯେଉଁ ହନ୍ତସନ୍ତ ହେଲାଣି, ତା ମନ ଘର ଧରିଗଲାଣି ।”

“ଥାଉ ଥାଉ, ତୁମର ଏତେ ବଡ଼ ମୂଲ୍ୟବାନ୍ ଥିସିସ୍ ଦେବା ଦରକାର ନାହିଁ । ଦରବୁଢ଼ାଟିଏ ତ ଆସି ହେଲଣି, ଆଉ ଏ ବୟସରେ ସେହି କଥାଗୁଡ଼ାକ ନ କହିଲେ କ’ଣ ଭାତ ହଜମ ହେଉ ନାହିଁ ?” ମୁଖରେ କୃତ୍ରିମ ରାଗ ଫୁଟାଇ କହିଲେ ଅମିତା ଦେବୀ, “ତୁମର ସବୁବେଳେ ସେହି ଖିଆଲିଆ କଥା । ମୁଣ୍ଡକୁ ପଶିଲାଣି ନା, ବାବୁର ଜନ୍ମଦିନ ଆଉ ଦିନ କେଇଟା ରହିଲା ?”

“ଓଃ, ସେଇ ଜନ୍ମଦିନରେ ଗାର୍ଡ଼ନ୍ ପାର୍ଟି କି ଡିନାର୍ ପାର୍ଟି ଦିଆଯିବ, ସେଇ କଥା ବର୍ତ୍ତମାନ ଭାବିବା କଥା ତ ? ଇଡେନ୍ ଗାର୍ଡ଼ନ୍‌ରେ ପାର୍ଟି ଦିଆଯିବ, କି କର୍ଜନ୍ ପାର୍କରେ ଦିଆଯିବ, ସେଇସବୁ କଥା ବର୍ତ୍ତମାନ ମୋ ମୁଣ୍ଡରେ ପଶିବା ଉଚିତ ତ ?” ଅମିତା ଦେବୀଙ୍କୁ ଚଡ଼ାଇବାପାଇଁ ହସି ହସି ଅଧ୍ୟାପକ କହିଲେ ।

ଅମିତା ଦେବୀ ଆହୁରି ରାଗିଯାଇ "ତୁମର ସବୁବେଳେ ଖାଲି ସେଇ କଥା ।" ଅଧ୍ୟାପକଙ୍କଠାରୁ ରାଗରେ ଚାଲି ଯାଉଁ ଯାଉଁ କହିଲେ, "ମୋର ତ, ଖାଲି ରଜା ରାଜୋଡ଼ା, ଆଇ. ଏ ଏସ୍.ଙ୍କ ଘର କଥା, ଗାର୍ଡ଼ନ୍ ପାର୍ଟି, ଡିନାର୍ ପାର୍ଟି କଥା ନ ଭାବିଲେ ମୋତେ କ'ଣ ଭାତ ରୁଚୁଛି କି ? ମୋର ଆଉ କ'ଣ ଅଛି କି, ଖାଲି ବଡ଼ଲୋକି କଥା ! ଝିଅ-ମହଲରେ ଭାସି ଯାଉଛି ନା ?"

ଅଧ୍ୟାପକ ରାଗରେ ଡମଡମ ହୋଇ ଚାଲିଯାଉଥିବା ଅମିତା ଦେବୀଙ୍କ ପଣତକାନିକୁ ଟିକିଏ ଦେଇ ତାଙ୍କ ନିଜ ଆଡ଼କୁ ଏତେ ଜୋର୍‌ରେ ଟାଣିଦେଲେ ଯେ ସେ ଟଳମଳ ହୋଇ ଅଧ୍ୟାପକଙ୍କ କୋଳରେ କଚାଡ଼ି ହୋଇପଡ଼ିଲେ । ଅଧ୍ୟାପକ ତାଙ୍କୁ କୋଳରେ ଭିଡ଼ି ଧରି ତାଙ୍କ ମୁହଁ ପାଖରେ ମୁହଁକୁ ଲଗାଇ କହିଲେ, "ଏଥର ତୁମେ କ'ଣ ପଚାରିବାକୁ ଚାହୁଁଥିଲ ପଚାର ମିତା !"

"କ'ଣ ଏଭଳି ଅବସ୍ଥାରେ ?" ନିଜର ମାଦକଭରା ଆଖିକୁ ନଚାଇ କହିଲେ ଅମିତା ଦେବୀ, "କିଏ ଯଦି ଚାଲିଆସିବ, ତେବେ ସେ କ'ଣ ଭାବିବ କହିଲ ? ବାପ-ମାଙ୍କର ଏ ବୁଢ଼ାକାଳିଆ ପ୍ରେମ ଦେଖି ଆମ ବାବୁଟି କ'ଣ ଭାବୁଥିବ କହିଲ ?" ଏତିକି କହି ଅମିତା ଦେବୀ ପୁଅକୁ କୋଳକୁ ଟାଣିନେଇ ଚୁମା ଦେବାପୂର୍ବରୁ ଅଧ୍ୟାପକ ଅମିତା ଦେବୀଙ୍କ ଅରୁଣ ରକ୍ତିମ କପୋଳ ଉପରେ ଆଙ୍କିଦେଲେ ମଧୁର ଚୁମ୍ବନର ଏକ ନରମ ଦାଗ ।

"ଅବସ୍ଥା ବେଳକୁ ବେଳ ଖରାପ ଆଡ଼କୁ ଯିବାକୁ ବସିଲାଣି ଦେଖୁଛି । ତମ ପାଖରେ ରହିଲେ ଆଜି ସକାଳଠାରୁ ଅପଦସ୍ଥ ହେବା ଛଡ଼ା ଆଉ କିଛି ନାହିଁ ।" ଏତିକି କହି ପୁଅକୁ ଧରି ଅମିତା ଦେବୀ ଅଧ୍ୟାପକଙ୍କ କୋଳରୁ ମୁକୁଳିବାକୁ ଚେଷ୍ଟା କଲେ ।

ଅଧ୍ୟାପକ ପୁଣି ପଣତକାନିକୁ ଟାଣିଧରି ଅମିତା ଦେବୀଙ୍କୁ ଚାଲିଯିବାକୁ ଦେଲେ ନି ।

"ନବବିବାହିତ ଟୋକା-ଟୋକୀଙ୍କଭଳି ଅଭିନୟ ଆରମ୍ଭ କରିଦେବାକୁ ତ ବସିଲଣି", ପୁଅକୁ ଧରି ଅଧ୍ୟାପକଙ୍କ କୋଳରେ ପଡ଼ିରହି

ଅମିତା ଦେବୀ କହିଲେ, "ମନେ ଅଛି ନା, ପୁଅ ଜନ୍ମଦିନ ପରା ମୁଣ୍ଡ ଉପରେ ଆସି ପଡ଼ିଲାଣି । ପୁଅର କ'ଣ ନାମ ଦିଆଯିବ, ଏପର୍ଯ୍ୟନ୍ତ ଠିକ୍ ହୋଇ ପାରିଲାନି ?"

"ଆରେ ସତେ ତ, ମୋର ତ ସେ କଥା ମୋଟେ ଖିଆଲ ନାହିଁ । ହଁ, ହଁ ପୁଅର ନାଁ କ'ଣ ଦେବା କହିଲ ?"

"ବାଃ, ମୁଁ ପଚାରିବି ତୁମକୁ, ତୁମେ ପଚାରିବ ମୋତେ । ପଚାରିପଚାରି ଶେଷ ହୋଇପାରିବ ନି । ଆରମ୍ଭ ହୋଇଯିବ ଥିଓରି ଅଫ୍ ଇନ୍‌ଫିନିଟି ।"

ଅଧ୍ୟାପକ ପୁଅର ନାଁ କ'ଣ ଦେବେ ଭାବିବାପାଇଁ ଅମିତା ଦେବୀଙ୍କୁ କୋଳରୁ ମୁକୁଳାଇଦେଇ ଚୁପ୍ କରି ବସି ଭାବିବାକୁ ଲାଗିଲେ । ତାଙ୍କୁ ଚୁପ୍ ହୋଇ ବସିବା ଦେଖି ଅମିତା ଦେବୀ ହସି ହସି କହିଲେ, "ହଉ ଥାଉ, ଚାଲ ଆଗେ ଚା' ଖାଇଆସିବ, ପରେ ବସି ଠିକ୍ କରିବ । ଆଜି ତ ରବିବାର, କେଉଁ.ଆଡ଼କୁ ଯିବାର ନାହିଁ । ପୂରା ସମୟ ଦେଇ ପୁଅ ନାଁ କ'ଣ ଦେବ ଭାବିବ ।"

ଏତିକ କହି ଅଧ୍ୟାପକଙ୍କ ହାତ ଧରି ଟାଣି ଟାଣି ନେଇଗଲେ ଅମିତା ଦେବୀ । ଯାଉଁ ଯାଉଁ ବାଟରେ ଅଧ୍ୟାପକ ପାଟିକରି ଉଠିଲେ, 'ଏ ଥର ପାଇଛି,' 'ଏ ଥର ପାଇଛି ।' କହି ସମୟ ଅଟକିଯାଇ, "ଏ ଥର ପାଇଛି,' 'ଏ ଥର ପାଇଛି, ମିତା !"

'ଏଥର ପାଇଛି' 'ଏଥର ପାଇଛି' କାହିଁକି କହୁଛ, 'ଇଉରେକ୍‌କା' 'ଇଉରେକ୍‌କା' ବୋଲି କହୁନ । ଖାଲି ବାକି ରହିଲା ଲୁଗାଟା ଫିଙ୍ଗିଦେଇ ଲଙ୍ଗଳା ହୋଇ ଦୌଡ଼ି ପଳାଇବାଟା ତ ? କ'ଣ ଆର୍‌କେମିଡସ୍‌ଙ୍କ ଅଭିନୟ ଆରମ୍ଭ କରିବାକୁ ମନେ ପଡ଼ିଗଲା ଏଇ ଅଧ ବାଟରେ ।"

"ପୁଅର କ'ଣ ନାମ ଦେବା, ଏଥର ମୋର ଠିକ୍ ମନେ ପଡ଼ୁଛି ମିତା ! ଅତି ଚମତ୍କାର ନାଁ । ହଁ, ହଁ, ଅତି ଚମତ୍କାର ! ସେହି ନାଁ ନିଶ୍ଚେ ଦେବା । ଏମିତି ନାଁ ପୃଥିବୀରେ କେହି କେବେ ଦେଇ ନ ଥିବ ମିତା । ପୁଅର ଜନ୍ମଦିନ କେଉଁଦିନ ପଡ଼ୁଛି କହିଲ, ଅକ୍‌ଟୋବର ମାସ ୪ତାରିଖ ଦିନ, ନା ? ତେବେ ଠିକ୍ ହେବ । କହିଲ, କହିଲ ମିତା, ଅକ୍ଟୋବର ମାସ ୪ ତାରିଖ ଦିନ କଏ ଜନ୍ମଲାଭ କରିଥିଲା ?"

ଅମିତା ଦେବୀ ଆଶ୍ଚର୍ଯ୍ୟ ହୋଇ ଅଧ୍ୟାପକଙ୍କ ଆଡ଼କୁ ଅନାଇ ରହିଲେ । କିଛି ସମୟ ଚିନ୍ତା କରି କହିଲେ, "ଆଜି କିଏ, ଆମ ବାବୁ ପରି ଜନ୍ମ ହୋଇଥିଲା !"

"ବାବୁ ଛଡ଼ା ସେଦିନ ଆଉ କିଏ ଜନ୍ମ ହୋଇଥିଲା, କହିଲ ?"

ଅମିତା ଦେବୀ ଆହୁରି ଆଶ୍ଚର୍ଯ୍ୟ ହୋଇ ଅଧ୍ୟାପକଙ୍କୁ ବଲବଲ କରି ଅନାଇ ରହିଲେ । ସେ କ୍ଷଣକପାଇଁ ଭାବିପାରିଲେନି ଅଧ୍ୟାପକ କି ଉତ୍ତର ଆଶା କରୁଛନ୍ତି ତାଙ୍କଠାରୁ ।

"ତୁମେ ଏତିକ କହି ପାରୁନ ମିତା ! ସେ ଦିନ ଆଉ କିଏ ଜାତ ହୋଇଥିଲା । ପାଞ୍ଚ ବର୍ଷର ପିଲାଟାକୁ ପଚାରିଲେ, ସେ ପରି କହିଦେଇ-ପାରିବ ।"

ଅମିତା ଦେବୀ ଆହୁରି ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲେ ଅଧ୍ୟାପକଙ୍କୁ । ତାଙ୍କ ମୁଣ୍ଡରେ ମୋଟେ ପଶିଲା ନି, ଏହି ପ୍ରଶ୍ନର ପ୍ରକୃତ ଉତ୍ତର କ'ଣ ହେବ ।

"ସେ ଦିନ ପରା ଋଷୀୟମାନଙ୍କର "ସ୍ପୁଟ୍‌ନିକ୍ ପ୍ରଥମ" ଜନ୍ମ ଲାଭ କରିଥିଲା; ସେତିକ କ'ଣ ତୁମେ ଏ ଭିତରେ ଭୁଲିଗଲଣି ? ଆମ ପୁଅର ନାଁ କ'ଣ ଦେବା ଏ ଥର ବୁଝିପାରିଲ ତ ?"

"କ'ଣ ସ୍ପୁଟ୍‌ନିକ୍ ? ତୁମ ମଥା ବୋଧ ହୁଏ ପୂରାପୂରି ବିଗିଡ଼ିଗଲାଣି । କ'ଣ, ତୁମ ପୁଅ ନାମ ହେବ 'ସ୍ପୁଟ୍‌ନିକ୍ ପଟ୍ଟନାୟକ' । ନାଁ ଦେବା ରାଜ୍ୟରେ ଏକ ଅଭିନବ ଶୃଙ୍ଖଳ୍ୟ ଖେଳାଇଦେବ ଦେଖୁଛି । ତୁମକୁ ଅନୁକରଣ କରି ଯଦି ଲୋକେ ସେମାନଙ୍କ ପୁଅ-ଝିଅମାନଙ୍କର ନାଁ ଦିଅନ୍ତି, 'ପେନ୍‌ସିଲିନ୍ ଦେବୀ, ଷ୍ଟ୍ରେପ୍‌ଟୋମାଇସିନ୍ ମହାପାତ୍ର, ଆର୍ସେନୋକୁମାରୀ ପଣ୍ଡା, ଥାୟୋଜଲ୍ କୁମାର ରାଉତ, ସଲ୍‌ଫା ଗୁଆନାଡିନ୍ ନାୟକ, କି ଟେଚ୍ଲଇଟ୍ ଦାସ ତା'ହେଲେ ଆମ ଦେଶ, ଜାତି, ଆଉ ସମାଜ ବେଶ୍ ନିହାଲ୍ !"

"କ୍ଷତି କେଉଁଠି ହେଲା ?" ଅଧ୍ୟାପକ ଆଶ୍ଚର୍ଯ୍ୟ ହୋଇ ଅମିତା ଦେବୀଙ୍କ ମୁହଁକୁ ଅନାଇ ପଚାରିଲେ, "ଦେବଦେବୀଙ୍କ ନାଁରେ ତ ପୁଅଝିଅଙ୍କ ନାମ ଦେଉଛ, ଏଠି ବୈଜ୍ଞାନିକ ଆବିଷ୍କାର କି ଉଦ୍ଭାବନ ନାଁରେ ନାମ ଦେବା ଅସୁବିଧା କେଉଁଠି ? ବିଷୟ କି ଗାଁ, କି ସହର ନାଁରେ ନାମଦିଆ ଆମ ଦେଶରେ ତ ଅଜଣା ନୁହେଁ । ସେ ଦିନ ଯେଉଁ ପିଲାଟି ମୟୂରଭଞ୍ଜରୁ

ଶୃଙ୍କର କରିବା ପାଇଁ ଆମ ଘରକୁ ଆସିଥିଲା, ତା ନାଁ କ’ଣ ଥିଲାଟି ? ଇତିହାସ ସାହୁ ପରା ? ତା ଭାଇ ନାଁ ସେ ପିଲାଟି କ’ଣ କହୁଥିଲା ମନେ ଅଛିଟି ? ଭୂଗୋଳ ସାହୁ ନା ? ତା ସବା ସାନ ଭାଇଟିର ନାଁ ପରା ସ୍ୱାସ୍ଥ୍ୟରକ୍ଷା ସାହୁ ?”

“ହଉ, ଥାଉ ଥାଉ, ତୁମର ନୂଆ ନାଁ ଦେବା ଫେସନ । ପୁଅ ନାଁ ଯଦି ସ୍ପୁଟ୍‌ନିକ୍ ଦିଅ, ତେବେ ବଙ୍ଗ ସରକାରଙ୍କୁ ବେଶି ଦିନ ଲାଗିବନି ତୁମକୁ ରାଞ୍ଚିର କାଙ୍କେ ହାସ୍‌ପାତାଲକୁ ପଠାଇବାକୁ । ତୁମ ପ୍ରେସିଡେନ୍‌ସି କଲେଜର ସୁବିଖ୍ୟାତ ବେକେର ଲାବୋରେଟରୀର ପରା ଏ ଦିଗରେ ଯଥେଷ୍ଟ ପୂର୍ବ ସୁଖ୍ୟାତି ଅଛି ! ତୁମ ଲାବୋରେଟରୀର କେତେ ଅଧ୍ୟାପକ ଏଥିପୂର୍ବରୁ କାଙ୍କେ ହାସ୍‌ପାତାଲକୁ ଯାଇଛନ୍ତି, ହିସାବ ରଖିଛଟି ! ସେଥିରେ ପୁଣି ଆଉ ଗୋଟିଏ ଯୋଗ କରିବ ନା କ’ଣ ?”

ଅମିତା ଦେବୀ ଅଧ୍ୟାପକଙ୍କୁ ଡିନର୍ ଟେବୁଲ୍ ଉପରେ ବସାଇ ପ୍ଲେଟ୍‌ରେ ଜଳଖିଆ ଦେଇ କପ୍‌ରେ ଚା ଢାଳିବାକୁ ଯାଉଛନ୍ତି, ହଠାତ୍ ବାହାର ପଟରୁ କିଏ କଲିଙ୍ଗ୍ ବେଲ୍‌କୁ ଚିପିଲା । ଅଧ୍ୟାପକଙ୍କ ହାତକୁ ତରତର ହୋଇ ଚା କପ୍ ବଢ଼ାଇଦେଇ ଅମିତା ଦେବୀ ଦୁଆର ଖୋଲି-ଦେବାକୁ ଚାଲିଗଲେ । ଦୁଆର ଖୋଲି ଦେଖନ୍ତି ତ ଦାଣ୍ଡରେ ଠିଆ-ହୋଇଛି ଗୋଟିଏ ପ୍ରକାଣ୍ଡ କେଡ଼ିଲାକ୍ କାର୍ । ତାଙ୍କୁ ଅପେକ୍ଷା କରି ଦୁଆର ମୁହଁରେ ହସହସ ମୁହଁରେ ଠିଆହୋଇଛନ୍ତି ଦୁଇଟି ସୁଶ୍ରୀ ଝିଅ । ଉନ୍ମେଷିତ ଯୌବନର ତରଳ ଗୃପରେ ଝିଅ ଦୁଇଟି ଅତି ନମ୍ର ହୋଇପଡ଼ିଥାନ୍ତି । ସ୍ନିଗ୍ଧ ମଧୁର ଚଞ୍ଚଳ ଚାହାଣିରେ ସେମାନେ ଦିଶୁଥାନ୍ତି କମନୀୟ, ଆଉ ସୁନ୍ଦର । ସେମାନେ ସଙ୍ଗେ ସଙ୍ଗେ ଅମିତା ଦେବୀଙ୍କୁ ନମସ୍କାର ଜଣାଇ ଅଧ୍ୟାପକ ପଟ୍ଟନାୟକଙ୍କୁ ସେମାନଙ୍କର ଦେଖାକରିବାର ପ୍ରୟାସ ଜଣାଇଲେ । ଅମିତା ଦେବୀ ଝିଅ ଦୁଇଟିଙ୍କର ବ୍ୟବହାରରେ ଅତ୍ୟନ୍ତ ମୁଗ୍ଧ ହୋଇ ସେମାନଙ୍କୁ ପାଛୋଟି ଆଣିଲେ ଅଧ୍ୟାପକଙ୍କ ନିକଟକୁ । ସେମାନେ ଆସିଲାବେଳକୁ ଅଧ୍ୟାପକ ଖେଳରେ ଲାଗିଯାଇଥାନ୍ତି ପୁଅ ସହିତ । ଖେଳୁ ଖେଳୁ ସେ ରସଗୋଲାଟାଏ ଉପରକୁ ଉଠାଇ ପୁଅକୁ କହୁଥାନ୍ତି, “କହିଲୁ ରେ ବାବା ସ୍ପୁଟ୍‌ନିକ୍, ଏ ରସଗୋଲାଟା ତୁ ଖାଇବୁ ନା ମୁଁ ଖାଇବି ? ଦେଖ୍, ତୁ ଯଦି ମୋ ହାତରୁ ନେଇପାରୁ, ତେବେ ତୁ ଖାଇବୁ ।”

ପିଲାଟି ତା ଛୋଟ ଛୋଟ ହାତ ବଢ଼ାଇ ପିତାଙ୍କଠାରୁ ରସଗୋଲାଟାକୁ ଧରିବାକୁ ଚେଷ୍ଟା କଲା ।

ଝିଅ ଦୁଇଟିଙ୍କୁ ସଙ୍ଗରେ ଧରି ଅମିତା ଦେବୀ ପଶିଆସିଲେ ଖାଇବା ଘରଭିତରକୁ । ପଶୁଁ ପଶୁଁ କହିଲେ, "ଥାଉ ଥାଉ ତୁମ ବାପ-ପୁଅଙ୍କର ଖେଳ । ଦେଖିଲଣି, ତୁମଠାକୁ ଏମାନେ କିଏ ଆସିଛନ୍ତି ?"

ଅଧ୍ୟାପକ ଅମିତା ଦେବୀଙ୍କର କଥା ପ୍ରତି ମୋଟେ କାନ ନ ଦେଇ ପୁଅକୁ କହିବାକୁ ଲାଗିଥାନ୍ତି, "ଥାଉ, ଥାଉ ରେ ବାବା ଷ୍ଟୁଟ୍‌ନିକ୍ ! ତୁ ପାରିବୁନି । ତୁ ଆଁ କର, ମୁଁ ତୋ ପାଟିରେ ରସଗୋଲାଟି ଦେଇଦେବି ।"

ଅଧ୍ୟାପକ ପୁଅକୁ ଷ୍ଟୁଟ୍‌ନିକ୍ ନାଁରେ ଡାକବାରେ ଝିଅ ଦୁଇଟି ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ଭାବିପାରିଲେନି ଦୁନିଆରେ ବି କେହି ତାହାର ପୁଅ ବା ଝିଅର ଏଭଳି ଅଦ୍ଭୁତ ନାମ ରଖିପାରେ । ଝିଅ ଦୁଇଟି ଏଭଳି ନୂଆ ଧରଣର ନାମ ଶୁଣି ଗାମ୍ଭୀର୍ଯ୍ୟ ରଖି ନ ପାରି ହସିପକାଇଲେ ବୁଦ୍ଧିମତୀ ଅମିତା ଦେବୀଙ୍କର ଦୃଷ୍ଟିରୁ ସେତକ ଏଡ଼ାଇ ନ ପାରି । ଅମିତା ଦେବୀ ଅଧ୍ୟାପକଙ୍କୁ ଟାରିଦ୍ କରି କହିଲେ, 'ହେଇ ଦେଖିଲଣି, ପୁଅ ନାଁ ଦେଲ କି ନାହିଁ, ଏଇ ଝିଅ ଦୁହେଁ ହସି ସାରିଲେଣି । ବାହାରେ ପୁଅ ନାଁ ଧରି ଡାକିଲେ ଆଉ ଲୋକେ ତୁମକୁ ରଖିବେ ତ ? ପାଗଳ ବୋଲି କହି ହସିବେ ନାହିଁ ତ ?"

ଅମିତା ଦେବୀଙ୍କ କଥାରେ ଅଧ୍ୟାପକ ଦୃଷ୍ଟି ଫେରାଇଲେ । ଅଦୂରରେ ଝିଅ ଦୁଇଟି ତାଙ୍କୁ ନମସ୍କାର କରିବା ଦେଖି ସେ ହଠାତ୍ କିଛି ବୁଝି-ପାରିଲେ ନି । ଏମାନେ କିଏ ଓ କେଉଁଠାକୁ ଆସିଛନ୍ତି ଜାଣିବାପାଇଁ ସେ ଅମିତା ଦେବୀଙ୍କ ଆଡ଼କୁ ଜିଜ୍ଞାସୁ ନୟନରେ ଅନାଇ ରହିଲେ ।

ଅମିତା ଦେବୀ କିଛି କହିବା ପୂର୍ବରୁ ଝିଅ ଦୁଇଟିଙ୍କ ଭିତରୁ ଜଣେ ଅଧ୍ୟାପକଙ୍କ ହାତକୁ ଖଣ୍ଡିଏ ଚିଠି ବଢ଼ାଇଦେଲେ । ଚିଠିଟି ଉପରେ ଚନ୍ଦ୍ରା ଚନ୍ଦ୍ରା ହାତ ଅକ୍ଷର । ଅଧ୍ୟାପକ ତରତର ହୋଇ ଚିଠିଟି ଖୋଲି ପଢ଼ିବାକୁ ଲାଗିଲେ । ଚିଠି ପଢୁପଢୁ ସେ କିଞ୍ଚିତ୍ ଅନ୍ୟମନସ୍କ ହେଲାଭଳି ଜଣା-ପଡୁଥାନ୍ତି । ଚିଠିଟି ଆସିଥିଲା ବେଥୁନ୍ କଲେଜର ଲେଡି ପ୍ରିନ୍‌ସିପାଲ୍ ମିସ୍ ସଂଯୁକ୍ତା ସେନ୍‌ଙ୍କଠାରୁ । ମିସ୍ ସେନ୍ ଅଧ୍ୟାପକଙ୍କୁ ଅନୁରୋଧ ଜଣାଇ-ଥାନ୍ତି, ସେମାନଙ୍କ କଲେଜରେ ଅନୁଷ୍ଠିତ ହେଉଥିବା ସାଂସ୍କୃତିକ ସପ୍ତାହରେ

'ସ୍ପୁଟ୍‌ନିକ୍' ଉପରେ ଏକ ଭାଷଣ ଦେବାପାଇଁ । ଅନୁରୋଧ ଛଳରେ ଚିଠିର ଶେଷ ଆଡ଼କୁ ଲେଖିଥାନ୍ତି, ........................................................................................

......ସ୍ପୁଟ୍‌ନିକ୍ ଉପରେ ଆପଣଙ୍କଭଳି ବିଖ୍ୟାତ ବୈଜ୍ଞାନିକଙ୍କ ମୁଖରୁ ଭାଷଣ ଶୁଣିଲେ ମୁଁ ଓ ମୋର କଲେଜର ଛାତ୍ରୀମାନେ ଯେତେ ଉପକୃତ ହେବୁଁ, ତାହା ଭାଷାରେ ବର୍ଣ୍ଣନା କରିହେବ ନ ମନୋଜବାବୁ ! ମୋର ଏକାନ୍ତ ଅନୁରୋଧ, ଆପଣ ଆମ୍ଭମାନଙ୍କୁ ନିରାଶ କରିବେନି । ଛାତ୍ରୀ ଦୁଇଟିଙ୍କ ହାତରେ ସମ୍ମତିପତ୍ର ପଠାଇଦେଲେ ଚିର ଉପକୃତ ହେବି । ଇତି ।

ଆପଣଙ୍କର ବିଶ୍ୱସ୍ତା
ସଂଯୁକ୍ତା ସେନ୍
ଲେଡି ପ୍ରିନ୍‌ସିପାଲ୍, ବେଥୁନ୍ କଲେଜ ।

ଚିଠିଟି ପଢ଼ୁପଢ଼ୁ ଅଧ୍ୟାପକ ପଟ୍ଟନାୟକଙ୍କ ମନରେ ବିଗତର କେତେ ଅଜ୍ଞାତ ଘଟଣାର ଛବି ନାଚିଉଠିଲା ଠିକ୍ ରୁପେଲି ପରଦାର ଚଳଚ୍ଚିତ୍ରଭଳି । ଏହିଭଳି କେତେ ଚିଠି ଯେ ତାଙ୍କ ପାଖକୁ ବିଗତରେ ଆସିଛି, ତା'ର ସଂଖ୍ୟା ସେ ଭାବି ଠିକ୍ କରିପାରିଲେ ନ । ମିସ୍ ସେନ୍‌ଙ୍କର ସେହି ଛୋଟ ଛୋଟ ଗୋଲ ଗୋଲ୍ ଅକ୍ଷର ଉପରେ ତାଙ୍କର ସେହି ହସହସ କମନୀୟ ମୁଖର ଏକ ଛବି ଫୁଟିଉଠିଲା । ଏହି ହାତ ଅକ୍ଷରରେ କେତେ ଅନୁରୋଧ, କେତେ ଅଭିମାନ, କେତେ କାକୁତି ଯେ ତାଙ୍କ ପାଖକୁ ଭାସିଆସିଛି, ତା'ର ଇୟତ୍ତା ନାହିଁ । ଏହିଭଳି ଅଜ୍ଞାତରେ ସଂଖ୍ୟାତୀତ ବିଗତ ଘଟଣା ଭାବୁ ଭାବୁ ହଠାତ୍ ତାଙ୍କ ମୁହଁ ବର୍ଷଣମୁଖୀ ମେଘଭଳି ଗମ୍ଭୀର ଓ ଭାରି ହୋଇଆସିଲା । ସେ ସାମାନ୍ୟ ଇତସ୍ତତଃ ହୋଇ ଝିଅଦୁହିଁଙ୍କୁ ଲକ୍ଷ୍ୟ କରି କହିଲେ, "ଦେଖ ବକ୍ତୃତାପାଇଁ ତୁମ୍ଭେମାନେ ମୋଠାକୁ ଆସି କମ୍ ବଡ଼ ଭୁଲ କରି ନ । ତୁମର ପ୍ରିନ୍‌ସିପାଲ୍ ବୋଧ ହୁଏ ଜାଣନ୍ତି ନ ଯେ ମୁଁ ଆଜକୁ ଦୁଇ ବର୍ଷ ହେଲା କେଉଁଠାରେ ବକ୍ତୃତା ଦେଉ ନ । ମୁଁ କାହିଁକି ବକ୍ତୃତା ଦେଉନି, ତା'ର କାରଣ ତୁମ୍ଭମାନଙ୍କର ନ ଜାଣିବା ହିଁ ଶ୍ରେୟସ୍କର । ମୁଁ ଯେତେବେଳେ କେଉଁଠି ବକ୍ତୃତା ଦେଉ ନ, ତୁମ କଲେଜରେ ଯାଇ ବକ୍ତୃତା ଦେବି କେମିତି ? ସ୍ପୁଟ୍‌ନିକ୍ ବିଷୟଟି ମୋର ଅତିପ୍ରିୟ ହେଲେ ହିଁ ମୁଁ ସେ ସଂପର୍କରେ କେଉଁଠି ପାଟି ଫିଟାଇବାକୁ ଅକ୍ଷମ ।"

"ଆପଣ ଅନ୍ୟ କେଉଁଠି ନ କହୁଥିଲେହେଁ ଆମ କଲେଜରେ କହିଲେ କ୍ଷତି କଅଣ ସାର୍ ? ଅନ୍ତତଃ ଆମ କଲେଜପାଇଁ ଏଥର ଅନୁଗ୍ରହ···।"

"କିନ୍ତୁ ମୁଁ ଥରେ ମୋ ପ୍ରତିଜ୍ଞା ଭାଙ୍ଗିଲେ ମୋତେ ପୂର୍ବଭଳି ପୁଣି ସବୁଠାରେ ବକ୍ତୃତା ଦେବାକୁ ପଡ଼ିବ । ବକ୍ତୃତା ଦେଉଁ ଦେଉଁ କେଉଁ ମୁହୂର୍ତ୍ତରେ କେଉଁ କଥା ପାଟିରୁ ବାହାରିପଡ଼ିବ, ତା'ର ତ ଠିକଣା ନାହିଁ । ପୁଣି ଏ ଯେଉଁ ବିଷୟ, ଅଯଥା ଅପ୍ରୀତିକର ପରିସ୍ଥିତିହିଁ ସୃଷ୍ଟି ହେବା ସାର ହେବ ।"

"ନାଇଁ ଆଜ୍ଞା, ଆମେ ଆପଣଙ୍କ ବକ୍ତୃତାର ପ୍ରଚାର ମୋଟେ କରିବୁ ନ । ବାହାରର କୌଣସି ଲୋକ, ଏପରି କି ପ୍ରେସ୍‌ବାଲାମାନଙ୍କୁ ମଧ୍ୟ ଶୁଣିବାକୁ ଅନୁମତି ଦେବୁ ନ ।"

"କିନ୍ତୁ ଆଜି ଯେଉଁ ଦଳେ ଲୋକ ଯାଇ ତୁମ ପବିତ୍ର ଅନୁଷ୍ଠାନରେ ବଳାତ୍କାରରେ ପଶି ମୋ ବକ୍ତୃତା ଉପରେ ତୀକ୍ଷ୍ଣ ଦୃଷ୍ଟି ଦେବେ, ସେମାନଙ୍କୁ ତ ତୁମ୍ଭେମାନେ ବାଧା ଦେଇପାରିବନି ।"

"କିନ୍ତୁ ଏହି ଲୋକଗୁଡ଼ିକ କିଏ ?" ଝିଅ ଦୁଇଟି ବୁଝି ନ ପାରି ଅଧ୍ୟାପକଙ୍କ ଆଡ଼କୁ ଜିଜ୍ଞାସୁ ନୟନରେ ଅନାଇରହିଲେ ।

ଅଧ୍ୟାପକ ହସିହସି ଝିଅ ଦୁହିଁଙ୍କୁ କହିଲେ, "ଆଜି ଟିକିଏ ଚିନ୍ତା କଲେ ଏମାନେ କିଏ ତୁମ୍ଭେମାନେ ଜାଣିପାରିବ । ତୁମ୍ଭେମାନେ ସମସ୍ତଙ୍କୁ ମୋ ବକ୍ତୃତା ଶୁଣିବାକୁ ନିଷେଧ କରିପାର, କିନ୍ତୁ ଏମାନଙ୍କୁ ତ ପାରିବନି ।"

ଝିଅ ଦୁହେଁ କିଛି ବୁଝି ନ ପାରି ଅଧ୍ୟାପକଙ୍କ ମୁହଁକୁ ବଲବଲ କରି ଅନାଇରହିଲେ ।

"ତୁମ୍ଭେମାନେ ଭାବୁଥିବ, ମୁଁ ତ ବିଜ୍ଞାନ ସମ୍ପର୍କରେ ଭାଷଣ ଦେବି, ମୋ ବକ୍ତୃତା ଶୁଣିବାପାଇଁ ପୁଣି ଏମାନେ ଆସିବେ କାହିଁକି ? ସେଇ କଥା ତୁମମାନଙ୍କୁ ଯେତିକି ଆଶ୍ଚର୍ଯ୍ୟ ଲାଗୁଛି, ମୋତେ ମଧ୍ୟ ସେତିକି । ରାଜନୀତି କ୍ଷେତ୍ର ହେଉ, ବିଜ୍ଞାନ କ୍ଷେତ୍ର ହେଉ ବା

ସାମାଜିକ କ୍ଷେତ୍ର ହେଉ, ମଣିଷ ସବୁ ଦେଶର ସବୁ କଥା କହିପାରିବ; କିନ୍ତୁ ପ୍ରଗତିଶୀଳ ଗୋଟିଏ ଦେଶର କଥା କହିପାରିବ ନି । ସେ ଦେଶର ଯେତେ ଭଲ ଗୁଣ ଥିଲେ ମଧ୍ୟ ତାହା ବଖାଣିବାକୁ ସତେ ଯେପରି କାହାରି ଅଧିକାର ନାହିଁ । ସେ ଦେଶକୁ ଛାଡ଼ି ଅନ୍ୟ ଯେ କୌଣସି ଦେଶର ଶତ ପ୍ରଶଂସା କଲେ ମଧ୍ୟ ସେଇ ପ୍ରଶଂସା ଆଡ଼କୁ କେହି ଭୁଲରେ ବି ନଜର ଦେବେ ନି । ପୁଣି ତୁମ୍ଭେମାନେ ଆଜି ଯେଉଁ ବିଷୟ ଉପରେ ମୋତେ କହିବାକୁ କହୁଛ, ତାହା ପରା ସେଇ ଦେଶର କୃତିତ୍ୱ । ତେଣୁ ସେ ପରିସ୍ଥିତିରେ ମୋର ନ କହିବା ହିଁ କ'ଣ ଶ୍ରେୟସ୍କର ନୁହେଁ ? ମୋର ଅନୁରୋଧ, ତୁମ୍ଭେମାନେ ମୋତେ ବଳାଅ ନାହିଁ । ମିସ୍ ସେନ୍‌ଙ୍କୁ ମୋ ଅକ୍ଷମତା ଜଣାଇ କ୍ଷମା କରିବାପାଇଁ କହିବ ।"

ଝିଅ ଦୁହେଁ ନିରାଶ ହୋଇ ଅମିତା ଦେବୀଙ୍କ ଆଡ଼କୁ ଅନାଇ ରହିଲେ । ଝିଅ ଦୁହିଁଙ୍କୁ ସାହାଯ୍ୟ କରିବାପାଇଁ ଅମିତା ଦେବୀ ଅଧ୍ୟାପକଙ୍କ ଆଡ଼କୁ ଅନାଇ କହିଲେ, "ସେମାନେ ଯେତେବେଳେ ଏତେ ଆଶା ବାନ୍ଧି ଆସିଛନ୍ତି, ତୁମର ସେମାନଙ୍କୁ ନିରାଶ କରିବା ମୋଟେ ଉଚିତ ନୁହେଁ । ଏଇଥର କହି-ଦେଇ ଆସ, ଆଉ ପଛେ ନ କହିବ ନାହିଁ ।"

"ଏ କିଛି କହିଦେବା ବା ନ କହିଦେବାର କଥା ନୁହେଁ ମିତା ! ମୁଁ ସେମାନଙ୍କ କଲେଜକୁ ଯାଇ ଅଯଥା ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିବ କାହିଁକି କହିଲ ? ତୁମେ ତ ଜାଣିଛ, ଏଇ ସ୍ପୁଟ୍‌ନିକ୍ ଉପରେ ବକ୍ତୃତା ଦେବାପାଇଁ କଲିକତା ତଥା କଲିକତା ବାହାରୁ କେତେ ନିମନ୍ତ୍ରଣ ଆସିଲାଣି ମୋଠାକୁ । ମୁଁ ସେଗୁଡ଼ିକୁ ମନା କରିଦେଇ ଆଜି ଏଇ ଝିଅମାନଙ୍କ କଲେଜରେ ବକ୍ତୃତା ଦେଇଆସିଲେ ସେମାନେ ସବୁ କ'ଣ ଭାବିବେ କୁହ ତ ?" ଝିଅମାନଙ୍କ ଆଡ଼କୁ ଅନାଇ 'ହେଉ ଯାଅ ତୁମ୍ଭେମାନେ, ମିସ୍ ସେନ୍‌ଙ୍କୁ ମୋ ଅକ୍ଷମତା ଜଣାଇଦେବ ।'





## ( ଦୁଇ )



ଝର ଝର ଗୋଟିଏ ବର୍ଷଣ ସକାଳ । ନବୀନ ଆଷାଢ଼ ବରଷାର ମଧୁର ଝଙ୍କାରରେ ଚତୁର୍ଦ୍ଦିଗ ଶବ୍ଦାୟିତ । କେତେବେଳୁଁ ସକାଳ ହୋଇ-ଯାଇଥିଲେହେଁ ଆକାଶରେ ଘନ କୃଷ୍ଣ ମେଘାବରଣହେତୁ ଚାରିଆଡ଼ ବିଶେଷ ଆଲୋକିତ ହୋଇ ନ ଥାଏ । ଅଧ୍ୟାପକ ମିଶ୍ର ମେଘାଚ୍ଛନ୍ନ ଆକାଶର ଛରେ ଛରେ ଜଳସିକ୍ତ ଦୂର୍ବାଦଳର ଶ୍ୟାମଶଯ୍ୟା ଉପରେ ବର୍ଷାର ନୃତ୍ୟ-ଛଳାସବୁ ଉପଭୋଗ କରିବା ପରିବର୍ତ୍ତେ ବିଛଣାରୁ ନ ଉଠି ମୁଣ୍ଡ ଉପରେ ଥିବା ବହିଥାକରୁ ଦୁଇ ଚାରି ଖଣ୍ଡ ବହି ନେଇ ପଢ଼ିବାରେ ବ୍ୟସ୍ତ । ଖେଳାମେଳା ହୋଇ କେତେ ଖଣ୍ଡ ମେଗାଜିନ୍ ମଧ୍ୟ ସେଠି ବିଛଣାରେ

ପଡ଼ିଥାଏ । ଶୟନକକ୍ଷର ରେଡ଼ିଓରୁ ବିଦେଶୀ ବେହାଲା ଷ୍ଟେସନର ଏକ ମୃଦୁ ସଙ୍ଗୀତର ମଧୁର ଝଙ୍କାର ଭାସିଆସୁଥାଏ ଠିକ୍ ସାନ୍ଧ୍ୟ ସମୀରଣରେ ଗନ୍ଧରାଜର ସୁବାସ ଭାସି ଆସିଲା ଭଳି । କେତେବେଳୁ ଅମିତା ଦେବୀ ପୁଅକୁ ଧରି ବିଛଣାରୁ ଉଠିଗଲେଣି ।

ପଢୁପଢୁ ହଠାତ୍ ମୁହଁ ଉଠାଇ ଅଧ୍ୟାପକ ଅମିତା ଦେବୀଙ୍କୁ ଡାକ ପକାଇଲେ । ଦୁଇ ତିନି ଥର ଡାକିବାପରେ ଅମିତା ଦେବୀ ଶୟନକକ୍ଷକୁ ପଶିଆସିଲେ ।

"ବିଛଣାରୁ ନ ଉଠି ସକାଳୁ ସକାଳୁ ମୋତେ କାହିଁକି ଏତେ ଡାକିବା ପଡ଼ୁଛି ଶୁଣେ ? ପୁଅକୁ ପରା ସେଆଡ଼େ ଖୁଆଇଦେଉଥିଲି ।"

"ଓଃ, ସେଇଥିପାଇଁ ପରା ଶ୍ରୀମତୀଙ୍କ କାନରେ ମୋ ଡାକ ପଶୁ ନ ଥିଲା ! ଯାହା କୁହ ମିତା, ପୁଅ ହେଲା ଦିନଠାରୁ ତୁମେ କିପରି ମୋଠାରୁ ଛାଡ଼ି ଛାଡ଼ି ହେଲାଭଳି ଜଣାପଡ଼ୁଛ । ମୋତେ ଯେପରି ତୁମେ ଧୀରେ ଧୀରେ ଭୁଲିଯିବାକୁ ବସିଲଣି । ପୁଅ ଜନ୍ମ ହେବାପୂର୍ବରୁ ତୁମର ମୋଠାରେ ଯେଉଁ ସ୍ନେହ ସୋହାଗ ଆଦି ଥିଲା, ସେସବୁ ତ ଆଜିକାଲି ମୁଁ ତୁମଠାରେ ଆଉ ଦେଖିବାକୁ ପାଉ ନ ? ସବୁ କଥାରେ ତୁମେ ଯେପରି ମୋତେ ପଛରେ ପକାଇଦେଇ ଅନ୍ୟ କାମ ସବୁ କରିଯିବାରେ ଲାଗିଛ । ଏଇଥିପାଇଁ ମୁଁ କହେ, ଏଇ ମାଈକିନିଆ ଜାତିଟାକୁ ସନ୍ତାନ ଦେବା ଭଗବାନଙ୍କର ଏକ ମସ୍ତବଡ଼ ଭୁଲ ।"

"ଥାଉ, ଥାଉ, ଏତେଗୁଡ଼ାଏ କଥା ଏକାଥରକେ କୁହନି । ବିବାହର ହେବାର ଆଠ ବର୍ଷପରେ ତ ପୁଅ ହେଲା । ଏଇ ଆଠ ବର୍ଷକାଳ ତ ସ୍ନେହ, ସୋହାଗ ଆଦି ଯାହା ପାଇବାର କଥା, ସବୁ ପାଇଲ । ସେତିକରେ କ'ଣ ପରିତୃପ୍ତି ଆସିଲା ନ ତୁମର ? ମୁଁ ଦେଖୁଛି, ତୁମର ଯେତିକି ବୟସ ଯାଉଛି, ତୁମେ ସେତିକି ଟୋକା ହୋଇଆସୁଛ । ତୁମକୁ ଲାଜ ମାଡୁନି ଟିକିଏ, ଏ କାଳରେ ଆଉ ଏମିତିକା କଥା କହୁଛ ? ବିବାହ ପରେ ପରେ ଯଦି ତୁମର ଝିଅଟିଏ ହୋଇଥାଆନ୍ତା, ଝିଅପାଇଁ ପରା ବର ଖୋଜିବାକୁ ବସନ୍ତଣି ! ଛିଃ, ତୁମ ମୁହଁରେ ଏମିତି କଥା କେମିତି ଆସୁଛି କେଜାଣି ? ହଉ କହିଲ, ସକାଳୁ ସକାଳୁ ମୋତେ ଏତେ ଡାକିବା ପଡ଼ିଥିଲା

କାହିଁକି ? ଶୀଘ୍ର କୁହ, ଚେତେଣେ ମୁଁ ପୁଅକୁ ପୁଷ୍ପାଗ୍ପାଖରେ ଛାଡ଼ିଦେଇ ଆସିଛି । ତୁମେ ବିଛଣାରୁ ଉଠିଆସୁ ନ ? ବିଛଣାରେ ଶୋଇ ପୁଣି କ'ଣ ପଢ଼ାଶୁଣା ଚାଲିଛି ?"

"ଓଃ, ମିତା, ଆଜି ସକାଳୁ ସକାଳୁ କମିତିକା ପାଗ ଦେଖାଇଛି କହିଲ ? ଏମିତି ପାଗରେ କେହି ଭଦ୍ରଲୋକ କ'ଣ କେବେ ବିଛଣାରୁ ଉଠେ ?"

ଏତକ କହି ଅଧ୍ୟାପକ ହାତଗୋଡ଼ ସଳଖ କରି ଅଳସ ଭାଙ୍ଗିବା-ପାଇଁ ବିଛଣାରେ ପଡ଼ିଗଲେ । "ଏମିତି ପାଗରେ ମୁଁ ଚାହେଁ ତୁମକୁ— ଖୁବ୍ ପାଖରେ ଓ ଖୁବ୍ ନିବିଡ଼ ଭାବରେ ମିତା !"

"ଆହାଃ, ସକାଳୁ ସକାଳୁ ଯେ କି ରସିକତା ବାହାରୁଚି, ମୁଁ ବୁଝିପାରୁ ନି । ଆଜି କ'ଣ କିଛି କାମଦାମ ମିଳୁନି କରିବାକୁ ? କାହିଁ, ତୁମର ଅଙ୍କକଷା ସବୁ କୁଆଡ଼େ ଗଲା କି ? ଅଙ୍କ କଷା ଛାଡ଼ି ଏସବୁ ବହିପତ୍ର କ'ଣ ପଢ଼ାପଢ଼ି ଚାଲିଲାଣି ?"

ଏତକ କହି ଅମିତା ଦେବୀ ଖଟ ଉପରକୁ ନଇଁ ପଡ଼ିଲେ ଅଧ୍ୟାପକ କ'ଣ ପଢ଼ୁଛନ୍ତି ଦେଖିବାପାଇଁ । ମେନ୍‌ଜେଲ୍‌ଙ୍କ 'ଫ୍ଲାଇଙ୍ଗ୍ ସସର୍', ରିଚାର୍ଡ଼ସନ୍‌ଙ୍କ 'ଫ୍ଲାଇଙ୍ଗ ସସର ଇଜ୍ ଏ ମିଷ୍ଟ୍ରି' ଆଦି ପୁସ୍ତକ ଦେଖି ଚମକିପଡ଼ି ପଚାରିଲେ, "ଆଜି ସକାଳୁ ସକାଳୁ ଏସବୁ ବହି କାହିଁକି ପଢ଼ାପଢ଼ି ଚାଲିଛି ଶୁଣେ ?"

"ଗୋଟିଏ ଜାଗାରେ ଆଜି ବକ୍ତୃତା ଦେବାକୁ ଅଛି ପରା ମିତା !" କହୁଁ କହୁଁ ନଇଁପଡ଼ିଥିବା ଅମିତା ଦେବୀଙ୍କ କୁସୁମ କୋମଳ କଳେବରକୁ ନିଜ ଛାତି ଉପରକୁ ଟାଣିନେଲେ ଅଧ୍ୟାପକ ଅତି ଅତର୍କିତଭାବରେ । "ଆଜି ଯେ ମୋତେ ବର୍ଗୀୟ ବିଜ୍ଞାନ ସମିତିରେ ଭାଷଣ ଦେବାକୁ ପଡ଼ିବ ଉଡ଼ନ୍ତା ଥାଳିଆ ଉପରେ ।"

ଅଧ୍ୟାପକଙ୍କ ବକ୍ଷଉପରେ ପଡ଼ିରହି ନିଜର ମୃଗାକ୍ଷି ଦୁଇଟିକୁ ନଚାଇ ଅମିତା ଦେବୀ ପଚାରିଲେ, "ହଁ, ସେଦିନ ପରା କହୁଥିଲ ଆଉ କେଉଁଠି ବକ୍ତୃତା ଦେବନି ବୋଲି । ସେହି କଥା କହି ସେ ଟିଅ ଦି'ଜଣଙ୍କୁ ପରା ଫେରାଇଦେଲ ? ଆଜି ପୁଣି 'ବର୍ଗୀୟ ବିଜ୍ଞାନ ସମିତି'ପାଇଁ ଏତେ ଆକର୍ଷଣ

କାହିଁକି ? ମିସ୍ ସେନ୍‌ଙ୍କଠାରୁ ଅଧିକ ଆକର୍ଷଣୀୟ କିଛି ଅଛି ନା କ'ଣ ତୁମର ସେହି ସମିତିରେ ?"

ଅମିତା ଦେବୀଙ୍କୁ ଗୁଡ଼ିତ ସହିତ ଆହୁରି ଜୋର୍‌ରେ ଭିଡ଼ିଧରି ଅଧ୍ୟାପକ କହିଲେ, "ହାୟ, ହାୟ ରେ କପାଳ ! ତା' ଯଦି ହୋଇଥାନ୍ତା, ତେବେ ଆଜି ଏ ପାଗରେ ମୁଁ ଏଭଳି ଅପଦସ୍ତ ହୋଇ ପଡ଼ିଥାନ୍ତି ?" ଅମିତା ଦେବୀଙ୍କ ଲଜ୍ଜାରୁଣ କପୋଳଉପରେ ଚୁମ୍ବନର ଏକ ମୃଦୁ ଛାପ ଆଙ୍କି ଦେଉଁଦେଉଁ କହିଲେ, "ଦୁନିଆରେ ସବୁ କାମ କ'ଣ ଏଇ ଆକର୍ଷଣ ଓ ବିକର୍ଷଣ ଉପରେ ପ୍ରତିଷ୍ଠିତ ମିତା ?"

"ମୋତେ ଯଦି ବିଶ୍ୱାସ ଆସୁନି, ତେବେ ଫ୍ରଏଡ୍‌ଙ୍କ ମନୋବିଜ୍ଞାନ ପଢ଼ି ଦେଖୁନ ? ଦେଖିଲେ ବୁଝିପାରିବ, ମୁଁ ଯାହା କହୁଛି ସତ କି ମିଛ ।"

ଅମିତା ଦେବୀଙ୍କ ବେକ ଗୁରିପାଖରେ ବେଢ଼ା ହୋଇଥିବା ହାତକୁ ଆହୁରି ଟିକିଏ ଭିଡ଼ିଆଣି କହିଲେ, "ପୃଥିବୀର ଅନ୍ୟ ଯେଉଁଠି ଯେତେ ଆକର୍ଷଣୀୟ ଥିଲେ ହେଁ ମୋତେ ତୁମଠାରୁ କେହି ଛଡ଼ାଇ-ନେଇପାରିବେନି ମିତା ! ତୁମର ସେଭଳି ଆଶଙ୍କାସୂଚକ ପ୍ରଶ୍ନ ନିତାନ୍ତ ଅଳୀକ । ମୋଠାରେ ତୁମେ ଯେପରି ପ୍ରିୟ, ବିଜ୍ଞାନ ସମିତି ଠିକ୍ ସେହିପରି । ତୁମକୁ ମୁଁ ଯେତିକି ଭଲ ପାଏ, ବିଜ୍ଞାନ ସମିତିକୁ ତା'ଠାରୁ କିଛି କମ୍ ନୁହେଁ । ନିଜ ହାତରେ ପରି ଗଢ଼ିଛି ସେହି ସମିତିକୁ । ଅପାର୍ ସାର୍କୁଲାର୍ ରୋଡ୍‌ରେ ସମିତିର ସେହି ଯେଉଁ ବିରାଟ ପ୍ରାସାଦ ଠିଆହୋଇଛି, ସେଇ କୋଠାର ପ୍ରତ୍ୟେକ ଇଟାରେ ହୁଏତ ମୋର ହାତ ବାଜିଥିବ ମିତା । ମୋତେ ଯେପରି ତୁମଠାରୁ କେହି ବିଚ୍ଛିନ୍ନ କରି ରଖି ପାରିବେନି, ସେହିଭଳି ବିଜ୍ଞାନ ସମିତିକୁ ମୋଠାରୁ କେହି ପୃଥକ୍ କରି ରଖିପାରିବେନି ମିତା !" କହୁଁ କହୁଁ ଅଧ୍ୟାପକଙ୍କ ଓଠ ପୁଣି ଉଠିଆସିଲା ଅମିତା ଦେବୀଙ୍କ ଆରକ୍ତ କପୋଳସହିତ ମିଳନ ନିମିତ୍ତ ।

କାଲେ କିଏ ଗୁଲିଆସିବ, ସେଇ ଭୟରେ ଅମିତା ଦେବୀ ଅଧ୍ୟାପକଙ୍କର ବାହୁବନ୍ଧନରୁ ମୁକୁଳିବାକୁ ଚେଷ୍ଟା କରି କହିଲେ, "ମ୍ୟୁନିସିପାଲିଟି-ଘରଟାକୁ ବିଲାତର ହାଇଡ୍ ପାର୍କରେ ପରିଣତ କରିଦେବାକୁ ବସିଲଣି ନା କ'ଣ ? କିଏ ଯଦି ଗୁଲିଆସିବ, ତେବେ ସେ କ'ଣ ଭାବିବ କୁହ ତ ?"

ଅଧ୍ୟାପକଙ୍କ କୋଳରୁ ମୁକ୍ତ ହୋଇ କହିଲେ, "ଓଃ, ଏଇ ଅଭିନୟ ପାଇଁ ପରି ଏତେ ଡାକରା ପଡ଼ିଥିଲା ଏତେ ସକାଳୁ ? ଦରବୁଢ଼ୀଟିଏ ତ ଆସି ହେଲଣି, ଆଉ କେତେ ଦିନ ଯେ ଏଇ ଅଭିନୟ ଚାଲିଥିବ, ମୁଁ ବୁଝିପାରୁନି ।"

"କାହିଁକି, ଯେତେ ଦିନ ପର୍ଯ୍ୟନ୍ତ ତୁମର ଏହି ଅପସରଣଶୀଳ ଯୌବନ ଚାଲିଯାଇ ନ ଥିବ, ଯେତେ ଦିନ ପର୍ଯ୍ୟନ୍ତ ତୁମର ଏଇ ପଦ୍ମପଲାଶ ନିନ୍ଦୀନୟନରେ ଲୀଳାଲୋଳ ଦୃଷ୍ଟି, ବୀଣାବିନିନ୍ଦିତ କଣ୍ଠରେ ସୁଧାସ୍ରାବୀ ସ୍ୱର, ଅମଳକମଳ ବଦନର ଲସିତ ଅଧରରେ ଦରବିକଶିତ ହାସ୍ୟରେଖା ଘନ ଅଞ୍ଜନ କୁନ୍ତଳରେ ମନମୋହିନୀ ଆକର୍ଷଣ ସର୍ବୋପରି ଆଉ ପୀନୋନ୍ନତ ବକ୍ଷରେ ଉଦ୍ଦାମ ଯୌବନର ସୁଖ୍ୟାପିତ ସଙ୍କେତ ଖେଳୁଥିବ, ସେତେଦିନ ପର୍ଯ୍ୟନ୍ତ ଏଇ ଅଭିନୟ ଚାଲିଲେ କ୍ଷତି କଅଣ ମିତା ?"

"ଥାଉ, ଥାଉ, ତୁମର ଏଇ କବିଜନସୁଲଭ ବର୍ଣ୍ଣନାଟୁକୁ । ଏଭଳି ସୌନ୍ଦର୍ଯ୍ୟ ବର୍ଣ୍ଣନା କରିପାରିଲେ କବି ହେବାକୁ ବେଶି ଡେରି ଲାଗିବ ନି ତୁମକୁ । ହଉ, ତୁମ କଥା ଅନୁସାରେ ମୁଁ ବୁଢ଼ୀ ହୋଇଗଲେ ତୁମର ଏ ଅଭିନୟ ବନ୍ଦ ହେବ ତ ?"

ଅମିତା ଦେବୀଙ୍କୁ ଉଗେଇବାପାଇଁ ଅଧ୍ୟାପକ ହସି ହସି କହିଲେ, "ଅଭିନୟ ବନ୍ଦ ନ କରି ଅଭିନେତ୍ରୀ ବଦଳ କଲେ କ୍ଷତି କଅଣ ମିତା ? ତୁମେ ତ ସେତେବେଳକୁ ଏଭଳି ଅଭିନୟ ପାଇଁ ପୂରାପୂରି ଅନୁପଯୁକ୍ତା ବିବେଚିତା ହୋଇସାରିଥିବ ।"

"ଆଉ ତୁମେ ତ ଅଭିନୟ ପାଇଁ ଚିର ଯୌବନ ଧରି ବସିଥିବ, ଠିକ୍ ଭାରତୀୟ ଚଳଚିତ୍ରର କେତେକ ଅଭିନେତାଙ୍କ ଭଳି ? ସକାଳୁ ସକାଳୁ ତୁମ ମୁଣ୍ଡକୁ ଏସବୁ ପାପକଥା ପଶୁଛି କାହିଁକି ଶୁଣେ ! ତୁମ ମୁଣ୍ଡରେ ଯଦି ସବୁବେଳେ ଏଭଳି ପାପକଥା ଖେଳେ, ତେବେ ପିଲାମାନଙ୍କୁ ଯେ କି ଶିକ୍ଷା ଦେବ, ମୁଁ ବୁଝିପାରୁ ନି ।"

"ଗଣିତ-ଶିକ୍ଷକ ଗଣିତ ଛଡ଼ା ଅନ୍ୟ କିଛି ବିଷୟରେ ଛାତ୍ରମାନଙ୍କୁ ଶିକ୍ଷା ଦେବାକୁ ହକ୍‌ଦାର ନୁହେଁ ମିତା ! ପୁଣି ଏ ପାଠଗୁଡ଼ାକ ଗଣିତର କୌଣସି ବିଭାଗ ଭିତରେ ଆସୁନି, ତେଣୁ ତୁମର ସେଭଳି ଆଶଙ୍କା କରିବା ନିହାତି ଅମୂଳକ । ଆଉ ଆଜିକାଲିକାର ଛାତ୍ରଛାତ୍ରୀମାନେ ଏସବୁ ବିଷୟରେ

ଏତେ ଧୁରନ୍ଧର ଯେ ସେମାନଙ୍କୁ ଏସବୁ ବିଷୟରେ ଶିକ୍ଷାଦେବା ଧୃଷ୍ଟତା ଛଡ଼ା ଅନ୍ୟ କିଛି ହେବ ନି । ସୁବିଧା ଯଦି ଦିଆଯାଏ, ସେମାନେ ବରଂ ଆମକୁ ଏ ବିଷୟରେ ନିଶ୍ଚୟ ଶିକ୍ଷା ଦେଇପାରିବେ ।”

× × × × ×

ବଙ୍ଗୀୟ ବିଜ୍ଞାନ ସମିତିର ବକ୍ତୃତା-ପ୍ରାଙ୍ଗଣ । କଲିକତା ପ୍ରେସିଡେନ୍‌ସି କଲେଜର ଗଣିତଶାସ୍ତ୍ରର ମୁଖ୍ୟ ଅଧ୍ୟାପକ ଓ ପୃଥିବୀର ବିଶିଷ୍ଟ ଗଣିତଜ୍ଞ ଡକ୍‌ଟର ମନୋଜକୁମାର ପଟ୍ଟନାୟକ ବକ୍ତୃତା ଦେଉଥାନ୍ତି “ଉଡ଼ନ୍ତା-ଥାଳିଆର ରହସ୍ୟ” ଉପରେ । ଅଧ୍ୟାପକ ପଟ୍ଟନାୟକ ଏହି ବିଷୟବସ୍ତୁ ଉପରେ ବକ୍ତୃତା ଦେବାପାଇଁ ବର୍ଷକତଳେ ସ୍ୱୀକୃତି ପ୍ରଦାନ କରିଥିଲେ ହେଁ କେତେକ ଅନିବାର୍ଯ୍ୟ କାରଣ, ବିଶେଷତଃ ଅଧ୍ୟାପକଙ୍କର ଭାରତରେ ଅନୁପସ୍ଥିତିହେତୁ ଏହି ବକ୍ତୃତା ସ୍ଥଗିତ ରଖାଯାଇଥିଲା । ଅଧ୍ୟାପକ ପଟ୍ଟନାୟକ ଭାରତର ପ୍ରତିନିଧି ହିସାବରେ ଆମେରିକା, ଇଉରୋପ ଆଦି ଭ୍ରମଣ କରି ଫେରିଆସି ଏହି ବକ୍ତୃତା ଦେବାର ଥିଲା; କିନ୍ତୁ ସେ ଭାରତକୁ ଫେରିବା ବାଟରେ ଭୂମଧ୍ୟସାଗରଦେଇ ଆସୁଆସୁ ଭାରତ ସରକାରଙ୍କଠାରୁ ନିର୍ଦ୍ଦେଶ ପାଇଲେ ରୁଷ ସରକାରଙ୍କର ନିମନ୍ତ୍ରଣକ୍ରମେ ମସ୍କୋର ଏକ ଗଣିତଜ୍ଞ ସମ୍ମିଳନୀରେ ଭାରତର ପ୍ରତିନିଧିତ୍ୱ କରିବାପାଇଁ । ତେଣୁ ସେ ଭୂମଧ୍ୟସାଗରରୁ ସିଧା ଚାଲିଲେ କୃଷ୍ଣସାଗରକୁ । ସେଠାରୁ ମସ୍କୋ ଯାଇ ଅଧିବେଶନରେ ଯୋଗଦାନ କରି ଏଇ କେତେ ମାସତଳେ ସେ ଭାରତକୁ ଫେରିଆସିଥାନ୍ତି । ସେ ଫେରିଆସିବାକ୍ଷଣି ବଙ୍ଗୀୟ ବିଜ୍ଞାନ ସମିତି ତାଙ୍କୁ ପୂର୍ବ ବକ୍ତୃତା ଦେବା-ପାଇଁ ଅନୁରୋଧ ଜଣାଇଥାଏ । ଅଧ୍ୟାପକ ପଟ୍ଟନାୟକ ନିଜ ପ୍ରତିଶ୍ରୁତି ରକ୍ଷା କରିବାପାଇଁ ବକ୍ତୃତା ଦେବାକୁ ରାଜିହୋଇଥାନ୍ତି । ‘ଉଡ଼ନ୍ତା ଥାଳିଆ’ ଯଦିଓ ପୁରୁଣା ବିଷୟ ହୋଇପଡ଼ିଲାଣି, ତଥାପି କଲିକତାର ବହୁ ଭଦ୍ରଲୋକ ଓ ଭଦ୍ରମହିଳା ତାଙ୍କ ବକ୍ତୃତା ଶୁଣିବାପାଇଁ ସେଦିନ ଏକତ୍ରିତ ହୋଇଥାନ୍ତି । ଆଶା, ଏହି ଜଗଦ୍‌ବିଖ୍ୟାତ ବୈଜ୍ଞାନିକ ‘ଉଡ଼ନ୍ତାଥାଳିଆ’ ଉପରେ ଅବା କେଉଁ ନୂତନ ଆଲୋକ ପକାଇବେ କିମ୍ବା ‘ଉଡ଼ନ୍ତାଥାଳିଆର’ ପ୍ରକୃତ ରହସ୍ୟ ସମ୍ବନ୍ଧରେ କିଛି ନୂତନ ତଥ୍ୟ ପ୍ରଦାନ କରିବେ ।

ବହୁ ଶ୍ରୋତାଙ୍କମଧ୍ୟରେ ବେଥୁନ୍ କଲେଜର ଲେଡ଼ି ପ୍ରିନ୍‌ସିପାଲ୍ ମିସ୍ ଫୟୁଜା ସେନ୍ ବି ଆସିଥାନ୍ତି । ପ୍ରଧାନ ବକ୍ତାଙ୍କ ମଞ୍ଚଠାରୁ ଅଳ୍ପ ଦୂରରେ ବସିଥାନ୍ତି ସେ । ବକ୍ତୃତା-କକ୍ଷ ଶ୍ରୋତାମାନଙ୍କଦ୍ୱାରା ଭରପୂର, ଏତେ ଲୋକ ଯେ ସହଜରେ ମୁଣ୍ଡ ଗଣି କହିହେବ ନି ଶ୍ରୋତାମାନଙ୍କର ପ୍ରକୃତ ସଂଖ୍ୟା କେତେ । ସେଦିନର ସଭାରେ ସଭାପତିତ୍ୱ କରୁଥାନ୍ତି ବଙ୍ଗଳାର ଅନ୍ୟତମ ବିଶିଷ୍ଟ ବୈଜ୍ଞାନିକ ବିଜ୍ଞାନବୃଦ୍ଧ ସାର୍ ଯତୀନ୍ଦ୍ରମୋହନ ଗୁପ୍ତ ।

ସଭାପତିଙ୍କ ସହ ଅଧ୍ୟାପକ ପଟ୍ଟନାୟକ ବକ୍ତୃତା-ପ୍ରାଙ୍ଗଣକୁ ପଶିଆସିଲା-ମାତ୍ରକେ ଘନ ଘନ କରତାଳିରେ ସଭାକକ୍ଷ କମ୍ପିଉଠିଲା । ସେକ୍ରେଟେରୀ ଗତ ଅଧିବେଶନର ବିବରଣୀ ପାଠ କଲାପରେ ସଭାପତି ଗୁପ୍ତ ଉଠି ବିଶିଷ୍ଟ ବକ୍ତାଙ୍କ ପରିଚୟ ଭାଷଣ ଦେବାକୁ ଯାଇ କହିଲେ, "ଆପଣମାନଙ୍କଠାରେ ଅଧ୍ୟାପକ ପଟ୍ଟନାୟକଙ୍କୁ ପରିଚିତ କରାଇଦେବାର ଧୃଷ୍ଟତା ମୋର ନାହିଁ । ସାରା ପୃଥିବୀ ଆଜି ଯାହାଙ୍କର ପ୍ରଶଂସାରେ ମୁଖରିତ, ତାଙ୍କୁ ଆପଣମାନଙ୍କଠାରେ ପରିଚିତ କରାଇବା ମୋ ପକ୍ଷରେ ଧୃଷ୍ଟତା ଛଡ଼ା ଆଉ କ'ଣ ହୋଇପାରେ ? ଆଜି ଯେଉଁ ସ୍ପୁଟ୍‌ନିକ୍ ପୃଥିବୀ ଚାରିପାଖରେ ଘୂରିବୁଲୁଛି, ସେହି ସ୍ପୁଟ୍‌ନିକ୍‌ର ଗତି, ବେଗ, ଦିଗ ଆଦି ଉପରେ ନାନା ଗବେଷଣା କରି ଡକ୍ଟର ପଟ୍ଟନାୟକ ସାରପୃଥିବୀରେ ସୁଖ୍ୟାତି ଅର୍ଜନ କରିଛନ୍ତି, ଏପରି କି ଭାରତର ପ୍ରଧାନ ବନ୍ଧୁରାଷ୍ଟ୍ର ସୋଭିୟେଟ୍ ରୁଷିଆ ଆଜି ତାଙ୍କର ପ୍ରଶଂସାରେ ପାଗଳ ।

ଗତବର୍ଷ ସୋଭିୟେଟ୍ ସରକାରଙ୍କଠାରୁ ବିଶେଷଭାବରେ ନିମନ୍ତ୍ରଣ ପାଇ ସେ ମହାଶୂନ୍ୟକୁ ସ୍ପୁଟ୍‌ନିକ୍ ପ୍ରେରଣ ଦେଖିବାର ସୁଯୋଗ ପାଇଥିଲେ । ଡକ୍ଟର ପଟ୍ଟନାୟକ ହେଉଛନ୍ତି ସର୍ବପ୍ରଥମ ବିଦେଶୀ ବୈଜ୍ଞାନିକ, ଯେ କି ରୁଷୀୟମାନଙ୍କ ଅତି ଗୁପ୍ତ ସ୍ପୁଟ୍‌ନିକ୍ ପ୍ରେରଣ ଦେଖିବାର ସୁଯୋଗ ଲାଭ କରିଥିଲେ । ଅଧ୍ୟାପକ ପଟ୍ଟନାୟକଙ୍କର ବହୁ ଗଣନା ରୁଷୀୟମାନଙ୍କ ସ୍ପୁଟ୍‌ନିକ୍ ପ୍ରେରଣରେ ଖୁବ୍ ସାହାଯ୍ୟକାରୀ ହୋଇଥିଲା ବୋଲି ସେମାନେ ସ୍ୱୀକାର କରନ୍ତି । ଆଜିର ସଭାରେ ଅଧ୍ୟାପକ ପଟ୍ଟନାୟକ 'ଉଡ଼ନ୍ତା ଥାଳିଆର ରହସ୍ୟ' ଉପରେ ନ କହି ସ୍ପୁଟ୍‌ନିକ ଉପରେ କହିବା ଉଚିତ ଥିଲା । ତେବେ ବର୍ଗୀୟ ବିଜ୍ଞାନ ସମିତି ବର୍ଷେ ହେଲା ଏହି ବକ୍ତୃତାକୁ ଗଡ଼ାଇ ଗଡ଼ାଇ ଆସୁଥିବାରୁ ପୂର୍ବ ପ୍ରତିଶ୍ରୁତି ରକ୍ଷା କରିବା ଉଦ୍ଦେଶ୍ୟରେ ଆଜିକାର ଏହି ବକ୍ତୃତା

ବନ୍ଦୋବସ୍ତ କରାଯାଇଛି । ତେବେ ନିକଟ ଭବିଷ୍ୟତରେ ଆମେ ଅଧ୍ୟାପକଙ୍କ ମୁଖରୁ ସ୍ପୁଟ୍‌ନିକ୍ ଉପରେ ଆଉ ଏକ ବକ୍ତୃତା ଶୁଣିବାକୁ ଦୃଢ଼ ଆଶା ପୋଷଣ କରୁଛୁ । ମୁଁ ଆଉ ଏ ସଂପର୍କରେ ଅଧିକ କିଛି କହି ଆପଣମାନଙ୍କ ସମୟ ନଷ୍ଟ କରିବାକୁ ଚାହୁଁନ । ଅଧ୍ୟାପକ ପଟ୍ଟନାୟକଙ୍କୁ ମୁଁ ତାଙ୍କର ଭାଷଣ ଦେବାପାଇଁ ଅନୁରୋଧ କରୁଛି ।”

ଅଧ୍ୟାପକ ପଟ୍ଟନାୟକ ଉଠୁ ନ ଉଠୁଣୁ ଘନ ଘନ କରତାଳିରେ ସଭାକକ୍ଷ କମ୍ପିଉଠିଲା । ଅଧ୍ୟାପକ ପଟ୍ଟନାୟକ ଠିଆହୋଇ ବଡ଼ ଚିନ୍ତାଶୀଳ ଭାବରେ ଆରମ୍ଭ କଲେ.........

“କିଛି ଦିନ ପର୍ଯ୍ୟନ୍ତ ଉଡ଼ନ୍ତା ଥାଳିଆ ବା ଫ୍ଲାଇଙ୍ଗ୍ ସସର୍ ସାଧାରଣଙ୍କଠାରେ ଅତି ରହସ୍ୟଜନକ ହୋଇ ରହିଥିଲା । ଏବେ ଯେ ତାହା ପୂରା ମାତାରେ ଗଲାଣି, ତା କହିହେବ ନ । ତେବେ ସ୍ପୁଟ୍‌ନିକ୍ ସୃଷ୍ଟି ହେବା ଦିନଠାରୁ ଆଉ ସେ ସମ୍ବନ୍ଧରେ ବିଶେଷ କିଛି ଖବର ବାହାରିବାର ଦେଖାଯାଉନ । ଯେତେବେଳେ ଏହି ଖବର ବାହାରୁଥିଲା, ସେତେ-ବେଳେ କେଉଁ ଦିନ ବାହାରୁଥିଲା ଉଡ଼ନ୍ତା ଥାଳିଆ ଆମେରିକା ଉପରେ ଉଡ଼ିଲାଣି ତ ତହିଁ ପରଦିନ ଖବର ବାହାରୁଥିଲା ଏହା ଫ୍ରାନ୍‌ସ ଉପରେ ଉଡ଼ିଲା । ପୁଣି ଦୁଇ ଦିନପରେ ବାହାରୁଥିଲା ଏହା ପଞ୍ଜାବ ଉପରେ ଉଡ଼ିଲା । ତା ମାସକପରେ ପୁଣି ବାହାରୁଥିଲା ଏହା ବମ୍ବେ ଆକାଶରେ ଦେଖାଗଲା । ଏହି ଉଡ଼ନ୍ତା ଥାଳିଆ ଖବର ଯେତିକି ରହସ୍ୟପୂର୍ଣ୍ଣ, ଉଡ଼ନ୍ତା ଥାଳିଆଟି ପ୍ରକୃତରେ କ’ଣ ତା’ଠାରୁ ଆହୁରି ଅଧିକ ରହସ୍ୟଜନକ ! ଉଡ଼ନ୍ତା ଥାଳିଆର ପ୍ରକୃତ ରହସ୍ୟ ଉଦ୍‌ଘାଟନ କରିବା ସେସମୟର ଲୋକଙ୍କ ପକ୍ଷରେ ଦୁରୂହ ହୋଇପଡ଼ିଥିଲା ।

ଯେଉଁମାନେ ଉଡ଼ନ୍ତା ଥାଳିଆକୁ ଆକାଶରେ ଉଡ଼ିବାର ଦେଖିଛନ୍ତି, ସେମାନେ କହନ୍ତି ଯେ ଏହା ଦେଖିବାକୁ ଚେପ୍‌ଟା, ଥାଳିଆଭଳି; ଆକାଶର ଅତି ଉଚ୍ଚରେ ଖୁବ ବେଗରେ ଯାଏ । ଏହା ଏତେ ବେଗରେ ଯାଏ ଯେ ତାକୁ ପରିଷ୍କାରଭାବରେ ଦେଖିହୁଏ ନାହିଁ । ତେବେ ଅଳ୍ପ ସମୟ ଭିତରେ ଯାହା ଦେଖିହୁଏ, ସେଥିରୁ ଜଣାଯାଏ ଯେ, ଏହାର ଚାରିପାଖ ଆଲୋକିତ । ଏଥିରୁ କୌଣସି ଶବ୍ଦ ବା ଧୂଆଁ, ଗ୍ୟାସ୍ ଆଦି କିଛି ବାହାରେ

ନାହିଁ । ପୃଥିବୀପୃଷ୍ଠକୁ ଏହା ମୋଟେ ଛଅ ଇଞ୍ଚରୁ ଏକ ଫୁଟ ଭିତରେ ବଡ଼ ଦିଶେ ।

କେତେକେ କହନ୍ତି, ଉଡ଼ନ୍ତା ଥାଳିଆ ଅନ୍ୟ କୌଣସି ଗ୍ରହରୁ ଆସୁଥିବା ମଣିଷ ବା ମଣିଷଭଳି କୌଣସି ଜୀବର ଯାନ । ସେମାନେ ସେମାନଙ୍କ ଗ୍ରହ ଛାଡ଼ି ପୃଥିବୀରେ ବସବାସ କରିବା ଉଦ୍ଦେଶ୍ୟରେ ଆସୁଛନ୍ତି । ଏଗୁଡ଼ିକ ଆମେରିକା ଉପରେ ଏତେ ଦେଖାଯାନ୍ତି କାହିଁକି—ତାହାର ଉତ୍ତର ଦେବାକୁ ଯାଇ ସେମାନେ କହନ୍ତି ଯେ ଆମେରିକା ଅତି ଧନୀ ଦେଶ ହୋଇଥିବାରୁ ସେମାନଙ୍କ ଲୋଭ ଆମେରିକା ଉପରେ ଅତି ବେଶି ଓ ସେମାନେ ଆମେରିକାରେ ବସବାସ କରିବାକୁ ଏକାନ୍ତ ଇଚ୍ଛୁକ । କିଛିଦିନ ତଳେ ଫ୍ରାନ୍ସ ଉପରେ ଯେଉଁ ଉଡ଼ନ୍ତା ଥାଳିଆ ଦେଖାଦେଇଥିଲା, ସେଥିରେ ମଣିଷ ଥିବାର ଏକ ଗୁଜବ ପ୍ରକାଶ ପାଇଥିଲା ଓ ସେମାନଙ୍କ ସହିତ ଦୁଇ ଜଣ ଫରାସୀ ଅଧିବାସୀ କୁଆଡ଼େ ଫରାସୀ ଭାଷାରେ କଥାବାର୍ତ୍ତା କରିପାରିଥିଲେ । ଶ୍ୟାମ-ଦେଶ ଉପରେ ଯେଉଁ ଉଡ଼ନ୍ତା ଥାଳିଆ ଦେଖାଦେଇଥିଲା, ସେଥିରେ ମଣିଷ ଥିବାର କେତେକେ କହନ୍ତି । କେତେକେ ପୁଣି କହନ୍ତି, ସେମାନେ ପୃଥିବୀର ବିଭିନ୍ନ ଦେଶର ଫଟୋଗ୍ରାଫ୍ ନେବାରେ ବ୍ୟସ୍ତ ଓ କେତେକ ଦେଶପ୍ରତି ସେମାନେ ଅଧିକ ଅନୁରକ୍ତ ଥିବାର ଜଣାଯାଉଛି । ଉଡ଼ନ୍ତାଥାଳିଆ ସମ୍ବନ୍ଧରେ ଏଭଳି ବହୁ ଗୁଜବ ପୃଥିବୀର ବହୁ ସ୍ଥାନରେ ଶୁଣିବାକୁ ମିଳୁଛି । ବର୍ତ୍ତମାନ ଆମେ ଆଲୋଚନା କରିବା ଉଡ଼ନ୍ତା ଥାଳିଆ ପ୍ରକୃତରେ କ'ଣ ଓ ଏହା ସମ୍ବନ୍ଧରେ ଯେଉଁସବୁ ଗୁଜବ ପ୍ରକାଶ ପାଇଛି, ସେସବୁର ସତ୍ୟାସତ୍ୟ କେତେ ଦୂର ।

'ଉଡ଼ନ୍ତା ଥାଳିଆ' ସମ୍ବନ୍ଧରେ ସର୍ବପ୍ରଥମ ଖବର ପ୍ରକାଶ ପାଇଥିଲା ଆମେରିକାରେ ୧୯୪୭ ମସିହାରେ, ଆଜକୁ ପ୍ରାୟ ଦଶ ଏଗାର ବର୍ଷ ତଳେ । ସେହି ବର୍ଷ ଜୁନ ମାସ ୨୪ ତାରିଖ ଦିନ କେନେଥ୍ ଆର୍‌ନୋଲ୍‌ଡ଼ ନାମକ ଜଣେ ଉଡ଼ାଜାହାଜଚାଳକ ଓ୍ୱାସିଂଟନ୍ ରାଜ୍ୟରେ ଉଡ଼ାଜାହାଜ ଚଳାଇ ଆସୁ ଆସୁ ନଅଗୋଟି ଥାଳିଆଭଳି କ'ଣ ଜିନିଷ ଆକାଶରେ ଉଡ଼ୁଥିବାର ଦେଖିଲେ । ଅନାଉଁ ଅନାଉଁ ସେଗୁଡ଼ିକ ଦୂର ଆକାଶକୁ ଉଡ଼ିଯାଇ କେଉଁଆଡ଼େ ଉଭେଇଗଲେ । ଆର୍‌ନୋଲ୍‌ଡ଼ ହିସାବ କରି ଦେଖିଲେ ଯେ ଏହି

ଥାଳିଆଭଳି ଜିନିଷର ବେଗ ହେଉଛି ଘଣ୍ଟାକୁ ୧୨୦୦ ମାଇଲରୁ ଊର୍ଦ୍ଧ୍ୱ । ଆର୍ନୋଲ୍ଡ୍ ଯେତେବେଳେ ତାଙ୍କର ଏହି ଅନୁଭୂତି କଥା ବର୍ଣ୍ଣନାକଲେ, ଯୁକ୍ତରାଷ୍ଟ୍ରସାରା ଚାଞ୍ଚଲ୍ୟ ଖେଳିଗଲା । ବହୁ ଲୋକ କାମଦାମ ଛାଡ଼ି ଦିନରାତି ଆକାଶକୁ କେବଳ ଚାହିଁରହିଲେ । ଚାହୁଁ ଚାହୁଁ ଯୁକ୍ତରାଷ୍ଟ୍ରର ପ୍ରାୟ ଚାଳିଶଗୋଟି ରାଜ୍ୟର ଲୋକେ କେଉଁଠି-ନା-କେଉଁଠି ଏହି ରହସ୍ୟମୟ ଥାଳିଆକୁ ଦେଖି-ଥିବାର ଖବର ପ୍ରକାଶ ପାଇଲା । ଆକାଶରେ ଏହି ଉଡ଼ନ୍ତା ଥାଳିଆ ଖୋଜିବା ଏପରି ଏକ ରୋଗ ହୋଇପଡ଼ିଲା ଓ ଏହି ଖବର ଶୁଣିବାକୁ ଲୋକେ ଏତେ ପାଗଳ ହୋଇପଡ଼ିଲେ ଯେ ଜଣେ କେହି ଯଦି ଏହି ଉଡ଼ନ୍ତା ଥାଳିଆକୁ ଆକାଶରେ ଦେଖିପାରିଲା, ତେବେ ତା ନାମ, ଫଟୋ ଆଦି ଖବରକାଗଜରେ ବାହାରି ଚାରିଆଡ଼େ ତା'ର ପ୍ରଚାର ହୋଇଯାଉଥିଲା ।

ଏହି ଖବର ଆହୁରି ପ୍ରାଧାନ୍ୟ ଲାଭ କଲା ୧୯୪୮ ମସିହା ଅକ୍ଟୋବର ମାସ ପହିଲା ଦିନ । ସେହିଦିନ ଲେଫ୍ଟନାଣ୍ଟ ଗର୍ମେନ୍ ନାମକ ଜଣେ ସେନାଧ୍ୟକ୍ଷ ଆମେରିକାର ଫାର୍ଗୋ ସହରରେ ଉଡ଼ାଜାହାଜ ଚଳାକୁ ଖସାଉଥିବାବେଳେ ଅଧମାଇଲ ଦୂରରେ ଝୁବ୍ ଉଜ୍ଜ୍ୱଳ କ'ଣ ଏକ ପଦାର୍ଥ ଚାଲିଯିବାର ଦେଖିଲେ । ସେ ତତ୍କ୍ଷଣାତ୍ ନ ଓହ୍ଲାଇ ସେହି ଆଲୋକ ପଛରେ ଗୋଡ଼ାଇଗଲେ । ପ୍ରାୟ ଅଧଘଣ୍ଟାଏ ପର୍ଯ୍ୟନ୍ତ ଗୋଡ଼ାଇବା-ପରେ ସେହି ଉଜ୍ଜ୍ୱଳ ଆଲୋକଟି ଉପରଆକାଶକୁ ଉଠିଯାଇ କେଉଁଆଡ଼େ ଲୀନ ହୋଇଗଲା । ଗର୍ମେନ୍ ବଡ଼ ମନକଷ୍ଟରେ ଫେରିଆସି ଯେତେବେଳେ ଏହି କଥା ଉଡ଼ାଜାହାଜଘାଟୀର ପରିଚାଳକଙ୍କୁ କହିଲେ, ସେ ତଳେ ଥାଇ ଗୋଟିଏ ବାଇନୋକ୍ୟୁଲାର ସାହାଯ୍ୟରେ ସେମାନଙ୍କର ଏହି ଦୌଡ଼ାଦୌଡ଼ି ଦେଖୁଥିଲେ ବୋଲି କହିଲେ । ଗର୍ମେନ୍ ପ୍ରକାଶ କଲେ ଯେ ସେ ଯେଉଁ ଉଜ୍ଜ୍ୱଳ ଆଲୋକ ଦେଖିଥିଲେ, ତାହା ଛଅଇଞ୍ଚ ଲମ୍ବ ଏକ ଥାଳିଆରୁ ଆସୁଥିଲା ଓ ସେହି ଥାଳିଆଟି ତାଙ୍କ ଉଡ଼ାଜାହାଜଠାରୁ ବହୁ ଗୁଣ ବେଗରେ ଗତିକରୁଥିଲା ।

ଏହିଭଳି ଦିନକୁଦିନ ସାରା ଯୁକ୍ତରାଷ୍ଟ୍ର ବହୁ ଉଡ଼ନ୍ତା ଥାଳିଆ ଖବରରେ ସରଗରମ ହୋଇଉଠିଲା । ପ୍ରାୟ ପ୍ରତିଦିନ କେହି ଜଣେ କେଉଁଠି-ନା-କେଉଁଠି ଏହାକୁ ଦେଖିଥିବାର ଖବର ଦେଉଥିଲା ।

୧୯୫୧ ମସିହା ଅଗଷ୍ଟ ମାସ ୨୫ ତାରିଖ ରାତି ପ୍ରାୟ ନଅ ଘଣ୍ଟା ସମୟରେ ଟେକ୍ସାସ୍ ଟେକ୍ନୋଲଜିକାଲ କଲେଜର ଭୂତତ୍ତ୍ୱବିଜ୍ଞାନ ଅଧ୍ୟାପକ ଡକ୍ଟର ରବିନ୍‌ସନ୍ ତାଙ୍କ ବଗିଚାରେ ବସି ଅଧ୍ୟାପକ ଓବେର୍ଗ ଓ ଅଧ୍ୟାପକ ଡୁକର ନାମକ ଦୁଇଜଣ ସହକର୍ମୀଙ୍କ ସହିତ ଗପସପ ହେଉଥିଲେ । ହଠାତ୍ ସେ ତିନହେଁ ଦୂର ଆକାଶରେ ପ୍ରାୟ ତିରିଶଗୋଟି ଆଲୋକମାଳା ଅର୍ଦ୍ଧ-ଚନ୍ଦ୍ରାକାରରେ ସଜ୍ଜିତ ହୋଇ ବନା ଶବ୍ଦରେ ଚକ୍ରବାଳର ଗୋଟିଏ ଆଡ଼ୁ ଅନ୍ୟ ଆଡ଼କୁ ଚାଲିଯାଉଥିବାର ଦେଖିଲେ । କିଛି ସମୟପରେ ସେହିଭଳି ଆଲୋକମାଳା ଆଉ ଥରେ ଆକାଶରେ ଠିକ୍ ସେହିଭଳି ଏମୁଣ୍ଡରୁ ସେମୁଣ୍ଡକୁ ଚାଲିଯିବାର ଦେଖିଲେ । ତହିଁ ପରଦିନ ସକାଳୁ ଖବର ନେବାରେ ଜଣାଗଲା ଯେ ଏହି ଆଲୋକମାଳା ଆମେରିକାର ଯୁଦ୍ଧବିଭାଗଦ୍ୱାରା ସୃଷ୍ଟି ହୋଇ ନ ଥିଲା ।

୧୯୫୧ ମସିହା ଅଗଷ୍ଟ ମାସଠାରୁ ନଭେମ୍ବର ମାସଭିତରେ ଅଧ୍ୟାପକ ଡୁକର୍ ଆକାଶରେ ଅନ୍ତତଃ ବାର ଥର ଏହିଭଳି ଆଲୋକମାଳା ଦେଖିଥିଲେ । ତାଙ୍କ ଛଡ଼ା ତାଙ୍କର ବହୁ ସହକର୍ମୀ ଓ ଛାତ୍ର ଏହିଭଳି ଆଲୋକମାଳା ମଧ୍ୟ ବହୁ ଥର ଆକାଶରେ ଦେଖିବାକୁ ପାଇଥିଲେ । ସେହି ବର୍ଷ ଅଗଷ୍ଟ ମାସ ୩୦ ତାରିଖ ରାତିରେ କାର୍ଲହାର୍ଟ ନାମକ ଅଠର ବର୍ଷ ବୟସ୍କ ଜଣେ ଯୁବକ ଏହିଭଳି ଉଡ଼ନ୍ତା ଆଲୋକମାଳାର ପାଞ୍ଚଗୋଟି ଫଟୋ ନେଇଥିଲେ । ତାଙ୍କ ଫଟୋରୁ ଜଣାଯାଏ ଯେ ଊଣେଇଶ କୋଡ଼ିଏ ଗୋଟି ଉଜ୍ଜ୍ୱଳ ଆଲୋକିତ ପଦାର୍ଥ ଅର୍ଦ୍ଧଚନ୍ଦ୍ରାକାରରେ ସଜ୍ଜିତ ହୋଇ ଆକାଶରେ ଉଡ଼ୁଥିଲା ।

କାର୍ଲହାର୍ଟଙ୍କର ଏହି ଫଟୋଗ୍ରାଫ୍‌କୁ ଯୁକ୍ତରାଷ୍ଟ୍ର ବିମାନବିଭାଗ ଭଲ-ଭାବରେ ପରୀକ୍ଷା କରି ମତ ଦେଲେ ଯେ ହାର୍ଟଙ୍କର ଚିତ୍ର ଏକ ପ୍ରକୃତ ଚିତ୍ର । ଚିତ୍ରରୁ ଆଲୋକଗୁଡ଼ିକ ଏତେ ଉଜ୍ଜ୍ୱଳ ଦିଶୁଥିଲା ଯେ ସେଗୁଡ଼ିକ ପ୍ରତିଫଳିତ ଆଲୋକ ବୋଲି ଭାବିବା ସମ୍ଭବ ନୁହେଁ । ତେଣୁ ଏହି ଆଲୋକ ଯେ ନିଶ୍ଚୟ କୌଣସି ବସ୍ତୁଦେହରୁ ଆସୁଥିଲା, ସେଥିରେ ସନ୍ଦେହ କରିବାର କିଛି ନ ଥିଲା । ଅଧ୍ୟାପକ ଡୁକର୍, ଅଧ୍ୟାପକ ରବିନ୍‌ସନ୍ ଓ ଅଧ୍ୟାପକ ଓବେର୍ଗ ଏବଂ ଅନ୍ୟାନ୍ୟ ବୈଜ୍ଞାନିକମାନେ ଏହିସବୁ ଘଟଣାକୁ ବିଶ୍ଳେଷଣ

କର ମତ ଦେଇଥିଲେ ଯେ ଏହି ଉଡ଼ନ୍ତା ପଦାର୍ଥଗୁଡ଼ିକ ପୃଥିବୀପୃଷ୍ଠରୁ ଅନ୍ତତଃ ୫୦ ହଜାର ଫୁଟ ଉପରେ ଉଡ଼ୁଥିଲେ ଓ ଘଣ୍ଟାକୁ ଅନ୍ତତଃ ୧୮୦୦୦ ମାଇଲ ବେଗରେ ଉଡ଼ୁଥିବାରୁ ସେମାନଙ୍କଠାରୁ କୌଣସି ଶବ୍ଦ ପୃଥିବୀପୃଷ୍ଠକୁ ଆସୁ ନ ଥିଲା ।

ଉଡ଼ନ୍ତା ଥାଳିଆର ଖବରରେ ଯେତେବେଳେ ଯୁକ୍ତରାଷ୍ଟ୍ର ସରଗରମ ହୋଇ ଉଠୁଥାଏ, ଠିକ୍ ସେତିକବେଳେ ଆଡ଼ାମସ୍କି ନାମକ ଜନୈକ ମାର୍କିନ ଲେଖକ ଉଡ଼ନ୍ତା ଥାଳିଆ ସମ୍ବନ୍ଧୀୟ ବିଭିନ୍ନ ଘଟଣାର ବିବରଣୀ ଦେଇ ଏକ ପୁସ୍ତକ ପ୍ରଣୟନ କରିଥିଲେ । ସେଥିରେ ତାଙ୍କର ଉଡ଼ନ୍ତା ଥାଳିଆ ସମ୍ବନ୍ଧୀୟ ବିଭିନ୍ନ ଆଲୋଚନା ଉଡ଼ନ୍ତା ଥାଳିଆର ବିଶେଷତ୍ୱକୁ ଯଥେଷ୍ଟ ବଢ଼ାଇଦେଇଥିଲା ଓ ଲୋକେ ଏହି ରହସ୍ୟଜନକ ପଦାର୍ଥ ଆଡ଼କୁ ଆହୁରି ଅଧିକ ଆକୃଷ୍ଟ ହୋଇପଡ଼ିଥିଲେ ।

୧୯୪୮ ମସିହା ଖଗୋଳ ବିଜ୍ଞାନରେ ବୈଜ୍ଞାନିକ କ୍ଲାଇଡ୍ ଟମବାଗୋ ଯେ କି ପାର୍ସିଭେଲ୍ ଲୋଏଲ୍‌ଙ୍କ ନିର୍ଦ୍ଦେଶନାନୁଯାୟୀ ପ୍ଲୁଟୋ ଗ୍ରହକୁ ଆବିଷ୍କାର କରିଥିଲେ, ନିଉମେକ୍ସିକୋସ୍ଥ ତାଙ୍କ ଘର ବଗିଚାରେ ବସି ନିଜ ସ୍ତ୍ରୀ ଓ ଶାଶୁଙ୍କ ସହିତ ଗପସପ ହେଉଥିଲେ । ହଠାତ୍ ଆକାଶର ଏମୁଣ୍ଡରୁ ସେମୁଣ୍ଡକୁ କ'ଣ ଗୋଟିଏ ଗୁଳିଗଲାଭଳି ତାଙ୍କୁ ଜଣାଗଲା । ଏହି ପଦାର୍ଥଟି ଉଡ଼ାଜାହାଜଠାରୁ ଅଧିକ ବେଗରେ ଓ ଉଲ୍‌କାଠାରୁ କମ୍ ବେଗରେ ଗଲାଭଳି ତାଙ୍କୁ ଲାଗିଲା । ସେମାନେ ବୁଲିପଡ଼ି ଅନାଇଲାବେଳକୁ ଏହା ଯଥେଷ୍ଟ ଦୂରକୁ ଯାଇସାରିଥିଲା ଓ ଖୁବ୍ ଅଳ୍ପ ସମୟ ଭିତରେ କେଉଁଆଡ଼େ ଅଦୃଶ୍ୟ ହୋଇଗଲା । ସେମାନେ ଯେତିକି ସମୟ ଦେଖିଥିଲେ ସେତିକି ସମୟ ଭିତରେ ଏହାକୁ ଏକ ଜାହାଜ ସହିତ ତୁଳନା କରିଥିଲେ ଓ ଏହା ଡିମ୍ବାକାର ଓ ଚେପ୍‌ଟା ବୋଲି ପ୍ରକାଶ କରିଥିଲେ । ଏହାର ଲାଞ୍ଜରୁ ଏକ ଉଜ୍ଜ୍ୱଳ ଆଲୋକ ବାହାରୁଥିଲା ଓ ଏହାର ଚାରିପାଖ ନୀଳ ସବୁଜ ଆଲୋକଦ୍ୱାରା ଆଲୋକିତ ଦିଶୁଥିଲା । ଏହି ଜାହାଜରେ ପ୍ରାୟ ଛ'ଟା ଝରକା ଥିବାର ସେମାନେ ଦେଖିଥିଲେ । ଏହାର ବେଗରୁ ଏହାକୁ ସେମାନେ ଏକ ରକେଟ୍ ଯାନ ସହିତ ତୁଳନା କରିଥିଲେ ଓ ଏଭଳି ଅଦ୍ଭୁତ ଯାନ ପୃଥିବୀରେ କେବେ ଦେଖାଯାଇ ନ ଥିଲା ବୋଲି ମତ ବ୍ୟକ୍ତ କରିଥିଲେ ।

୧୯୫୦ ମସିହା ମେ ମାସ ୨୯ତାରିଖ ଦିନ ସୁର୍ଯ୍ୟାବେଳେ ଲସ୍ ଏଞ୍ଜେଲସ ସହର ନିକଟବର୍ତ୍ତୀ ଗୋଟିଏ ଉଡ଼ାଜାହାଜ ତିଆରି କାରଖାନାର ତିନି ଜଣ କାରିଗର ବାହାରେ ଠିଆହୋଇ କଥାବାର୍ତ୍ତା ହେଉ ହେଉ କେତେଗୁଡ଼ିଏ ଉଡ଼ନ୍ତା ଥାଳିଆ ଆକାଶରେ ଉଡ଼ିବାର ଦେଖିଲେ । ସେମାନଙ୍କଭିତରୁ ସୁଲିଭିଆନ୍ ନାମକ ଜଣେ କାରିଗର ତାଙ୍କର ଅନୁଭୂତି ବର୍ଣ୍ଣନା କରିଥିଲେ । ସେ କହିଥିଲେ ଯେ ପ୍ରାୟ ୩୦ଗୋଟି ଉଜ୍ଜ୍ୱଳ ଉଲ୍‌କାଭଳି ବସ୍ତୁ ପୂର୍ବଦିଗର ଦିଗ୍‌ବଳୟରେ କିଛି ଉପରକୁ ଦେଖାଦେଇ ନିମିଷକମଧ୍ୟରେ ଆକାଶର ଆରପାଖକୁ ଚାଲିଯାଇଥିଲା । ସେମାନେ ହିସାବ କରି ଦେଖିଲେ ଯେ ସେହି ଉଜ୍ଜ୍ୱଳ ବସ୍ତୁଗୁଡ଼ିକର ବ୍ୟାସ ହେବ ଅନ୍ତତଃ ୩୦ ଫୁଟ ଓ ଏଗୁଡ଼ିକ ଘଣ୍ଟାକୁ ୧୭୦୦ ମାଇଲରୁ ଊର୍ଦ୍ଧ୍ୱ ବେଗରେ ଯାଉଥିଲେ । ଏଗୁଡ଼ିକ ଏତେ ବେଗରେ ଯାଇ ମଧ୍ୟ ହଠାତ୍ ସମକୋଣ କରି ଦିଗ ପରିବର୍ତ୍ତନ କରିପାରୁଥିଲେ । ଏହି ଉଡ଼ନ୍ତା ବସ୍ତୁଗୁଡ଼ିକ ଦେଖିବାକୁ ଗୋଲକାର ଓ ଚେପ୍‌ଟା । ଏହାର ଚାରିପାଖରେ ଏକ ପ୍ରକାର ନୀଳ ଆଲୋକପ୍ରଭା ଥିବାର ସୁଲିଭିଆନ୍ ଦେଖିଥିଲେ ।

ପରିଷ୍କାର ଦିନରେ କୌଣସି ପ୍ରାକୃତିକ ଆଲୋକଦୃଶ୍ୟ ଏପରି ଅଦ୍ଭୁତ ଉଜ୍ଜ୍ୱଳ ଆଲୋକ ପ୍ରଦାନ କରିବାର ଜଣା ନ ଥିଲା । ପୁଣି କୌଣସି ବସ୍ତୁ ଏତେ ବେଗରେ ଯାଇ ମଧ୍ୟ ଠିକ୍ ସମକୋଣ କରି ଦିଗ ପରିବର୍ତ୍ତନ କରିବା ଏକ ନୂଆ କଥା ।

୧୯୫୧ ମସିହା ଜାନୁୟାରି ମାସ ୨୦ ତାରିଖ ରାତି ସାଢ଼େ ଆଠଟାରେ ଲରେନ୍‌ସ ଭିନ୍‌ଥର ନାମକ ଜଣେ ସେନାବିଭାଗର କେପ୍‌ଟେନ୍ ଆମେରିକାର ଆୟୋଆ ଉଡ଼ାଜାହାଜ ଘାଟୀର ପରିଚାଳକଙ୍କ ଆଦେଶକ୍ରମେ ଆକାଶର ଏକ ଉଜ୍ଜ୍ୱଳ ଆଲୋକ ପଛରେ ଏକ ଡାକୋଟା ବିମାନରେ ଗୋଡ଼ାଇଥିଲେ । ସେ ନିଜ ସଙ୍ଗରେ ଜଣେ ସହକର୍ମୀ ଚାଳକଙ୍କୁ ମଧ୍ୟ ନେଇଥିଲେ । ସେମାନେ କିଛି ଦୂର ଗଲାପରେ ସେହି ଆଲୋକଟି ହଠାତ୍ କୁଆଡ଼େ ଉଭେଇଗଲା । ଏହା କୁଆଡ଼େ ଗଲା ଜାଣିବାପାଇଁ ଚାଳକଦ୍ୱୟ ବଡ଼ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ସେଦିନ ଜହ୍ନରାତି, ଚାରିଆଡ଼ ଚନ୍ଦ୍ରାଲୋକ ଦ୍ୱାରା ବେଶ୍ ଆଲୋକିତ । ସେମାନେ ସେହି ଉଜ୍ଜ୍ୱଳ ପଦାର୍ଥଟିକୁ ବେଶ୍ ପରିଷ୍କାର ଦେଖିପାରିଥିଲେ । ସେମାନେ ଫେରିଆସି କହିଲେ ଯେ ଏହା

ଆକାରରେ ଗୋଟିଏ ସିଗାରେଟ୍‌ଭଳି । ଏଥିରେ ଇଞ୍ଜିନ୍ ଆଦି ଥିଲା କି କ'ଣ ସେମାନେ ଜାଣିପାରି ନ ଥିଲେ । ଏହି ଉଜ୍ଜ୍ୱଳ ପଦାର୍ଥଟିରୁ କୌଣସି ଶବ୍ଦ ଆସୁ ନ ଥିଲା । କେବଳ ତା'ର ତଳ ଅଂଶରୁ ଏକ ଉଜ୍ଜ୍ୱଳ ଆଲୋକ ଆସୁଥିଲା । କିଛି ସମୟପରେ ଏହି ଉଜ୍ଜ୍ୱଳ ପଦାର୍ଥଟି ଡାକୋଟା ବିମାନ ତଳକୁ ଚାଲିଯାଇ କୁଆଡ଼େ ଅଦୃଶ୍ୟ ହୋଇଯାଇଥିଲା ।

ପଦାର୍ଥଟି ଏତେ ବେଗରେ ଯାଉଁ ଯାଉଁ କିପରି ହଠାତ୍ ଦିଗ ବଦଳାଇ ବିପରୀତ ଦିଗକୁ ଯାଇପାରିଲା, ତାହା ସେମାନଙ୍କୁ ଅତ୍ୟଧିକ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ଏପର୍ଯ୍ୟନ୍ତ ଉଡ଼ାଜାହାଜର ଗତି ସମ୍ବନ୍ଧୀୟ ଯେତେ ତଥ୍ୟ ଓ ସୂତ୍ର ଆବିଷ୍କୃତ ହୋଇଛି, ତାହାଦ୍ୱାରା ଏହାକୁ ବ୍ୟାଖ୍ୟା କରିବା ସମ୍ଭବପର ହୋଇ ନାହିଁ ।

୧୯୫୧ ମସିହା ଡିସେମ୍ବର ମାସ ୨ ତାରିଖ ରାତିରେ ହଠାତ୍ ଏକ ଗୋଲାକାର ସବୁଜ ବର୍ଣ୍ଣର ଅଗ୍ନିପିଣ୍ଡ ଆକାଶରେ ଦେଖାଗଲା । ଏହା ଚନ୍ଦ୍ରଠାରୁ ବେଶି ଉଜ୍ଜ୍ୱଳ, ନିଜର ଆଲୋକରେ ନିକଟବର୍ତ୍ତୀ ବହୁ ପର୍ବତପୃଷ୍ଠକୁ ଆଲୋକିତ କରିଦେଇଥିଲା । ଏହା ଏରିଜୋନାର ବିଶ୍ୱବିଦ୍ୟାଳୟଠାରୁ ବାହାରି ଆକାଶ ଭିତରେ ପୂର୍ବଦିଗକୁ ଗତି କରି କିଛି ଦୂରପରେ ବାଣ ଭଳି ବିସ୍ଫୋରିତ ହୋଇ ଛତୁଭଳି ମେଲହୋଇଯାଇଥିଲା, କିନ୍ତୁ ସେଥିରୁ କୌଣସି ଶବ୍ଦ ଉତ୍ପନ୍ନ ହୋଇ ନ ଥିଲା । ପ୍ରାୟ ଦେଢ଼ଶହ ଲୋକ ଏରିଜୋନାର ବିଭିନ୍ନ ସ୍ଥାନରେ ଥାଇ ଆକାଶର ଏହି ଦୃଶ୍ୟକୁ ଦେଖିଥିଲେ । ୧୯୦୮ ମସିହାଠାରୁ ଏହିଭଳି ଶହ ଶହ ଘଟଣା ଆମେରିକାର ବହୁ ସ୍ଥାନରେ ଲୋକେ ଦେଖିଆସୁଥିବାର ଖବର ମିଳେ ।

ଯେଉଁମାନେ ଏହି ଆଲୋକ ଦେଖିଥିଲେ, ସେମାନେ କହନ୍ତି ଯେ ଏ ଆଲୋକର ବର୍ଣ୍ଣ ସବୁଜ । ତମ୍ବା ଜାଳିଲେ ଯେଉଁ ସବୁଜ ବର୍ଣ୍ଣର ଆଲୋକ ମିଳେ, ଏହା ଠିକ୍ ତା'ପରି । ଏହି ଅଜଣା ଆଲୋକ କୌଣସି ଉଲ୍‌କାରୁ ଆସୁଛି କି କଅଣ, ସେ ବିଷୟରେ ସନ୍ଦେହ ଦୂର କରିବାପାଇଁ ନିଉମେକ୍‌ସିକୋ ବିଶ୍ୱବିଦ୍ୟାଳୟର ଉଲ୍‌କା-ବିଶେଷଜ୍ଞ ଡାକ୍ତର ଲିନ୍‌କନ୍ ଲ' ପାଜଙ୍କୁ ପଚରାଗଲା । ସେ କହିଲେ ଯେ ଉଲ୍‌କାପିଣ୍ଡରେ ତମ୍ବା ନ ଥିବାରୁ ଉଲ୍‌କାର ଆଲୋକ କେବେ ସବୁଜ ଦେଖାଯାଏ ନାହିଁ । ଏହି ସବୁଜ

ବର୍ଷର ଆଲୋକ କୌଣସି ଉଲ୍‌କାରୁ ଯେ ଆସି ନ ପାରେ, ସେ ତା' ସପକ୍ଷରେ ଆହୁରି କେତେ ଯୁକ୍ତି ବାଢ଼ିଥିଲେ । ଆକାଶରେ ଚମ୍ପା ଥିବା କୌଣସି ଏକ ବସ୍ତୁର ଦଗ୍‌ଧହେତୁ ଏଭଳି ଉତ୍ପନ୍ନ ହେବା ସୁନିଶ୍ଚିତ । ଆହୁରି ଏକ ଆଶ୍ଚର୍ଯ୍ୟ ଘଟଣା ହେଉଛି ଯେ ୧୯୪୮ ମସିହାଠାରୁ ଅର୍ଥାତ୍ ଯେଉଁଦିନଠାରୁ ଏହି ଉଡ଼ନ୍ତା ଥାଳିଆ ଓ ଉଡ଼ନ୍ତା ସିଗାରେଟ୍ ଆଦି ଏରିଜୋନା ଓ ନିଉମେକ୍‌ସିକୋ ରାଜ୍ୟର ଆକାଶରେ ଦେଖାଗଲାଣି, ସେହି ଦିନଠାରୁ ସେହି ଆକାଶରେ ଉସମାନ ଚମ୍ପାରେଣୁର ପରିମାଣ ଯଥେଷ୍ଟ ବଢ଼ିଯାଇଥିଲା । ଏଥିପୂର୍ବରୁ ଆକାଶରେ କେବେ ଏତେ ଚମ୍ପାରେଣୁ ଭାସିବାର ଦେଖାଯାଇ ନ ଥିଲା ।

ରହସ୍ୟଜନକ ଉଡ଼ନ୍ତା ଥାଳିଆ, ଉଡ଼ନ୍ତା ସିଗାରେଟ୍ ଓ ସବୁଜ ଆଲୋକପେଣ୍ଡୁ ପ୍ରଭୃତି କ'ଣ ହୋଇପାରେ, ବର୍ତ୍ତମାନ ଅନୁମାନ କରିବା । ଏଗୁଡ଼ିକୁ କୌଣସି ମାନସିକ ବିକାରଜନିତ ଦୃଶ୍ୟ ବୋଲି ଭାବିବା ଉଚିତ ନୁହେଁ; କାରଣ ଏହା ବହୁ ଲୋକଙ୍କ ଦ୍ୱାରା ବାରମ୍ବାର ଦେଖାଯାଇ ସତ୍ୟ ଘଟଣା ବୋଲି ନିଶ୍ଚିତଭାବରେ ପ୍ରତିପାଦିତ ହୋଇସାରିଛି । କେତେକଙ୍କ ମତରେ ଏଗୁଡ଼ିକ ସୌରଜଗତର ଅନ୍ୟ କୌଣସି ଗ୍ରହରୁ ଆସୁଥିବା କୌଣସି ସୁସଭ୍ୟ ଜୀବର ଯାନ ହୋଇପାରେ କିମ୍ବା ଅଉ କେତେକଙ୍କ ମତରେ ଏହା ଯୁକ୍ତରାଷ୍ଟ୍ରର ଗୁପ୍ତ ପରମାଣୁ ଶକ୍ତି ଓ ସାମରିକ ଗବେଷଣା ବିଭାଗର କୌଣସି ଅତି ଗୁପ୍ତ ପରୀକ୍ଷା । ବୈଜ୍ଞାନିକ ମରିସ୍ ବିଯୁଟ୍‌ଙ୍କ ମତରେ ଏଗୁଡ଼ିକ ମହାଶୂନ୍ୟରୁ ଆସୁଥିବା ଅନ୍ୟ କୌଣସି ଗ୍ରହର ପଦାର୍ଥ; କିନ୍ତୁ ଆଉ କେତେକ ବୈଜ୍ଞାନିକ ଓ ସମାଲୋଚକଙ୍କ ବିଶ୍ୱାସ ଯେ ସେଗୁଡ଼ିକ କୌଣସି ବିଜ୍ଞାନୋନ୍ନତ ରାଷ୍ଟ୍ରର ଗୁପ୍ତ ସାମରିକ ଓ ପରମାଣୁ ଗବେଷଣାର କେତେଗୁଡ଼ିଏ ପରୀକ୍ଷା ବ୍ୟତୀତ ଅନ୍ୟ କିଛି ନୁହେଁ ।

ପରମାଣୁ ଯୁଗରେ ଅତି ଦ୍ରୁତଗାମୀ ଯାନ ଉଦ୍ଭାବନ କରିବା ନାନା ଦୃଷ୍ଟିରୁ ଅତି ଜରୁରୀ ହୋଇପଡ଼ିଛି । ଏହିଭଳି ଦ୍ରୁତଗାମୀ ଯାନ ଆଜିକାଲି ପରମାଣୁ ଶକ୍ତି ସାହାଯ୍ୟରେ ଚଳାଇବା ସମ୍ଭବପର; କାରଣ, ଅତି ଦ୍ରୁତଗାମୀ ଯାନକୁ ରସାୟନିକ ବସ୍ତୁ ଶକ୍ତି ଯୋଗାଇବା ଅସମ୍ଭବ । ଏହାକୁ ପୃଥିବୀର ସବୁ ଦେଶର ବୈଜ୍ଞାନିକମାନେ ବେଶ୍ ପରିଷ୍କାର ଉପଲବ୍‌ଧି

କରିପାରିଛନ୍ତି । ତେଣୁ ଅତି ଗୁପ୍ତରେ ବିଭିନ୍ନ ଦେଶ ଏଭଳି ଗବେଷଣା ଚଳାଇଥିବା ସ୍ୱାଭାବିକ । ତେଣୁ ଗୁପ୍ତ ଗବେଷଣାଲବ୍ଧ ଆବିଷ୍କାରକୁ ପରୀକ୍ଷା କଲାବେଳେ ଲୋକେ ପ୍ରକୃତ ବିଷୟକୁ ନ ଜାଣି ନାନା ଭାବରେ ଚିହ୍ନିତ କରିବା ସ୍ୱାଭାବିକ । ସମ୍ପୃକ୍ତ ଦେଶମାନେ ସେ ସମ୍ବନ୍ଧୀୟ ପ୍ରକୃତ ବିଷୟକୁ ମଧ୍ୟ ପ୍ରକାଶ କରିବାକୁ ଅନିଚ୍ଛୁକ ହେବା ଅତି ସାଧାରଣ କଥା ।

ଅନେକେ ଜାଣିଥିବେ ଦ୍ୱିତୀୟ ମହାସମର ବେଳେ ଯୁକ୍ତରାଷ୍ଟ୍ରରେ ଯେଉଁ ପରମାଣୁ ବୋମା ଗବେଷଣା ଚାଲିଥିଲା, ତାହା ଦ୍ୱିତୀୟ ମହାସମର ଶେଷପର୍ଯ୍ୟନ୍ତ ଖୁବ୍ ସାବଧାନତା ସହକାରେ ଗୋପନ ରଖାଯାଇଥିଲା । ପରମାଣୁ ବୋମା ଗବେଷଣା କେନ୍ଦ୍ରର ନାମ ରଖାଯାଇଥିଲା, "ଡେଭଲପ୍-ମେଣ୍ଟ ଅଫ୍ ସବ୍‌ଷ୍ଟିଚିଉଟ୍ ମେଟିରିଏଲସ୍", ଯା'ର କୌଣସି ସମ୍ପର୍କ ନାହିଁ ପ୍ରକୃତ ଗବେଷଣା ସହିତ । ଯେତେବେଳେ ସର୍ବପ୍ରଥମେ ପରମାଣୁ ବୋମାର ବିସ୍ଫୋରଣ ପରୀକ୍ଷା ନିଉମେକ୍‌ସିକୋ ରାଜ୍ୟସ୍ଥ ଆଲାମ୍‌ଗାର୍ଡ଼ୋ ଉଡ଼ାଜାହାଜ ଘାଟିଠାରେ କରାହୋଇଥିଲା, ତାକୁ ଖୁବ୍ ସାବଧାନତା ସହକାରେ ଗୋପନ ରଖାଯାଇଥିଲା ଯୁଦ୍ଧ ଶେଷପର୍ଯ୍ୟନ୍ତ । ପରମାଣୁ ବୋମାର ବିସ୍ଫୋରଣକୁ ଲୋକେ ଆକାଶରେ ଦେଖି ଓ ଗର୍ଜନକୁ ଶୁଣି ମଧ୍ୟ ପରମାଣୁ ବୋମା ସମ୍ବନ୍ଧରେ କିଛି ଜାଣିପାରି ନ ଥିଲେ । ଏ ସମ୍ପର୍କରେ କୌଣସି ଖବର ମଧ୍ୟ ସରକାରଙ୍କ ପକ୍ଷରୁ ପ୍ରକାଶ କରାଯାଇ ନ ଥିଲା । ଏହାର ପରୀକ୍ଷା ବାରମ୍ବାର ହେଉ ନ ଥିବାରୁ ଲୋକେ ଅଳ୍ପ କେତେଦିନ ଭିତରେ ଏହି ବିସ୍ଫୋରଣକୁ ଭୁଲି ଯାଇଥିଲେ । ହିରୋସୀମା ଉପରେ ପରମାଣୁ ବୋମା ନ ପଡ଼ିବାପର୍ଯ୍ୟନ୍ତ ସାଧାରଣ ଲୋକେ ଏହି ପରମାଣୁ ବୋମା ସମ୍ବନ୍ଧରେ କିଛି ଜାଣିପାରି ନ ଥିଲେ । କୌଣସି ଗୁପ୍ତ ଗବେଷଣାକୁ ବେଶି ଦିନ ଧରି ଗୋପନ ରଖିବାକୁ ହେଲେ ଗବେଷଣାକୁ ଅନ୍ୟ ଏକ ନାମ ଦେଇ ଲୋକମାନଙ୍କ ମଧ୍ୟରେ ପ୍ରଚାର କରିବା ଆଧୁନିକ ଯୁଗରେ ହେଲା ଏକ ଅଭିନବ ଉପାୟ । ଉଡ଼ନ୍ତା ଥାଳିଆର ରହସ୍ୟ ଭିତରେ ଏହି ସତ୍ୟଟି ଯେ ଥାଇପାରେ ତାହା କିଏ ଅସ୍ୱୀକାର କରିବ ?

ଯେଉଁମାନେ ୧୯୪୭ ମସିହାଠାରୁ ଆମେରିକାର ଉଡ଼ନ୍ତା ଥାଳିଆର ଠିକିନିଖି ଖବର ରଖିଆସିଛନ୍ତି, ସେମାନେ ଗୋଟିଏ କଥା ଅନୁମାନ କରି-ପାରୁଥିବେ ଯେ ପ୍ରଥମେ ପ୍ରଥମେ ଅଧିକାଂଶ ଉଡ଼ନ୍ତା ଥାଳିଆ ଆମେରିକାର

କାଲିଫର୍ଣ୍ଣିଆ, ଏରିଜୋନା ଓ ନିଉମେକ୍‌ସିକୋ ପ୍ରଭୃତି ଅଞ୍ଚଳରେ ସାଧାରଣତଃ ଦେଖାଯାଇଥିଲା । ଏଠାରେ ଗୋଟିଏ କଥା ସୂଚାଇଦେଲେ ଆପଣମାନେ ପ୍ରକୃତ ବିଷୟ ଜାଣିପାରିବେ ଯେ ଆମେରିକାର ଗୁପ୍ତ ପରମାଣୁ ଶକ୍ତି ଓ ସାମରିକ ବିଭାଗରେ ଯେତେଗୋଟି ଗୋପନୀୟ ଗବେଷଣାଗାର ଅଛି, ସେଥିମଧ୍ୟରୁ ଅଧିକାଂଶ ଆମେରିକାର ଏହି ଅଞ୍ଚଳରେ ଅବସ୍ଥିତ । ପୁନଶ୍ଚ ପରମାଣୁ ବୋମା ପରୀକ୍ଷାଭିଳି ଯୁକ୍ତରାଷ୍ଟ୍ର ସରକାରଙ୍କର ଉଡ଼ନ୍ତା ଥାଳିଆ ସମ୍ବନ୍ଧରେ ଯେଉଁ ଅପୂର୍ବ ନୀରବତା, ତାହା ଏହି ସନ୍ଦେହକୁ ଆହୁରି ଦୃଢ଼ୀଭୂତ କରିବା ସ୍ୱାଭାବିକ ।

ଉଡ଼ନ୍ତା ଥାଳିଆ ପ୍ରକୃତରେ ଯୁକ୍ତରାଷ୍ଟ୍ର ସରକାରଙ୍କର ସାମରିକ ଗବେଷଣା କେନ୍ଦ୍ରର କେତେଗୁଡ଼ିଏ ଅତି ଗୋପନୀୟ ଗବେଷଣା ବୋଲି ଖାଲି ଯେ ମୋର ବ୍ୟକ୍ତିଗତ ବିଶ୍ୱାସ ତା ନୁହେଁ, ଇଉରୋପ ଓ ଏସିଆରେ ବହୁ ବୈଜ୍ଞାନିକ ମଧ୍ୟ ଉଡ଼ନ୍ତା ଥାଳିଆ ସମ୍ବନ୍ଧରେ ସେହି ମତ ପୋଷଣ କରନ୍ତି । ଆନ୍ତର୍ଜାତିକ ଶକ୍ତି ରାଜନୀତିରେ ଯୁକ୍ତରାଷ୍ଟ୍ରର ପ୍ରାଧାନ୍ୟ କାହାରିକୁ ଆଜି ଅଜଣା ନୁହେଁ । ଯୁକ୍ତରାଷ୍ଟ୍ର ମଧ୍ୟ ସେହି ପ୍ରାଧାନ୍ୟକୁ ଚିରଦିନ ବଜାୟ ରଖିବାକୁ ଚାହେଁ ଓ ଚାହିଁଆସିଛି । ପରମାଣୁ ବୋମା, ହାଇଡ୍ରୋଜେନ୍ ବୋମା ଓ ଅନ୍ୟାନ୍ୟ ପରମାଣୁ ମାରଣାସ୍ତ୍ର ଯୁକ୍ତରାଷ୍ଟ୍ରରେ ସେହି ବଜାୟ ଦିଗରେ ପ୍ରଧାନ ସହାୟକ ।

ପୃଥିବୀରେ ବର୍ତ୍ତମାନ ପରିସ୍ଥିତି ଏପରି ହୋଇଛି ଯେ ପରମାଣୁ ବୋମା ଆଦି ମାରଣାସ୍ତ୍ର କେବଳ ତିଆରି କରି ରଖିଲେ କିଛି ଲାଭ ନାହିଁ, ଯଦି ସେଗୁଡ଼ିକୁ ଖୁବ୍ ଦକ୍ଷତା ସହକାରେ ଶତ୍ରୁରାଜ୍ୟ ଉପରେ ପକାଇବାର କୌଣସି ବନ୍ଦୋବସ୍ତ କରା ନ ଯାଏ । ପରମାଣୁ ଓ ରକେଟ ଯୁଗରେ ଉଡ଼ାଜାହାଜ ଯେ ଯୁଦ୍ଧପାଇଁ ବିଶେଷ ଉପଯୋଗୀ ନୁହେଁ, ଏହା ଯୁଦ୍ଧବିଶାରଦମାନେ ଖୁବ୍ ଭଲଭାବରେ ଜାଣନ୍ତି । ତେଣୁ ଏପରି କୌଣସି ଶକ୍ତିଶାଳୀ ଯାନ ଉଦ୍ଭାବିତ ହେବା ଦରକାର, ଯାହା କି ହଜାର ହଜାର ମାଇଲ ଦୂରର ଶତ୍ରୁରାଜ୍ୟ ଉପରେ ପାରମାଣବିକ ବୋମା ପକାଇ ଆଖି ପିଛୁଳାକେ ଶତ୍ରୁ ରାଜ୍ୟକୁ ଧ୍ୱଂସ କରିପାରିବ । ଏହିଭଳି ଦ୍ରୁତଗାମୀ ଯାନ ଆଜିକାଲି ପରମାଣୁ ଶକ୍ତି ସାହାଯ୍ୟରେ ସମ୍ଭବପର । ଯୁକ୍ତରାଷ୍ଟ୍ର ସରକାରଙ୍କର ସାମରିକ ବିଭାଗ

ଯେତେଦୂର ସମ୍ଭବ, ଏହିଭଳି ଗୁପ୍ତ ଗବେଷଣା ଉପରେ ଅଧିକ ଆସ୍ଥା ସ୍ଥାପନ କରିଥିବା ସ୍ୱାଭାବିକ । ସେମାନଙ୍କଦ୍ୱାରା ଆବିଷ୍କୃତ ଏହିଭଳି ଅତି ଦ୍ରୁତଗାମୀ ଯାନକୁ ପରୀକ୍ଷା ନ କଲେ ତ ଗବେଷଣା ବା ଉଦ୍ଭାବନ ପୂର୍ଣ୍ଣତା ଲାଭ କରିପାରେନା । ସେଗୁଡ଼ିକୁ ପ୍ରକୃତ କ୍ଷେତ୍ର ଉପରେ ପରୀକ୍ଷା ନ କରି ସେଗୁଡ଼ିକର ଦକ୍ଷତା ମଧ୍ୟ ଜାଣିହେବନି । ସେଥିପାଇଁ ସମ୍ଭବତଃ ଯୁକ୍ତରାଷ୍ଟ୍ର ସରକାର ଏହି ପରୀକ୍ଷାଗୁଡ଼ିକୁ ଅତି ରହସ୍ୟଜନକ ଭାବରେ ଲୋକମାନଙ୍କ ଆଖିରେ ଧୂଳି ଦେଇ ଚଳାଇଥିବା ଅଧିକ ସ୍ୱାଭାବିକ । ଲୋକମାନଙ୍କୁ ଏଗୁଡ଼ିକୁ ଅନ୍ୟ ଗ୍ରହର ଯାନ ବୋଲି କହି ଭୁଲାଇଦେଲେ ଲୋକମାନଙ୍କର ଦୃଷ୍ଟି ଅନ୍ୟ ଆଡ଼କୁ ଗଡ଼ିଯିବ; ଫଳରେ ସେଗୁଡ଼ିକର ଗୋପନୀୟତା ବେଶି ଭଲ ରହିପାରିବ ।

ଯୁକ୍ତରାଷ୍ଟ୍ର ସରକାରଙ୍କ ଗୁପ୍ତ ଫରମାଣ୍ଡ ଓ ସାମରିକ ବିଭାଗ ଉଡ଼ନ୍ତା ଥାଳିଆ ଭିତର ଦେଇ କେଉଁ କେଉଁ ପ୍ରକାର ଗବେଷଣା କରିପାରନ୍ତି, ତାହା ନିର୍ଣ୍ଣୟ କରିବା ଅତୀବ କଷ୍ଟକର ହେଲେ ମଧ୍ୟ ସ୍ଥୂଳଦୃଷ୍ଟିରୁ ସେ ସମ୍ବନ୍ଧରେ କିଛି ଅନୁମାନ କରାଯାଇପାରେ । ପ୍ରଥମତଃ ଘଣ୍ଟାକୁ ହଜାର ହଜାର ମାଇଲ ବେଗରେ ଯାଇପାରୁଥିବା କୌଣସି ନବାବିଷ୍କୃତ ପରମାଣୁ ଯାନର ଦକ୍ଷତା ସେମାନେ ଏହା ସାହାଯ୍ୟରେ ପରୀକ୍ଷା କରିପାରନ୍ତି, ଯାହା ଏପର୍ଯ୍ୟନ୍ତ ପ୍ରକାଶ୍ୟ ଗବେଷଣା ଭିତରେ ସମ୍ଭବପର ହୋଇନି । ଦ୍ୱିତୀୟତଃ ଶବ୍ଦହୀନ ଯାନ ଓ ଅତି ସହଜରେ ଦିଗ ବଦଳାଇବାପାଇଁ କେତେଗୋଟି ଆବିଷ୍କୃତ ଅଭିନବ ଉପାୟର ଦକ୍ଷତା ପ୍ରତିପାଦନପାଇଁ ବାରମ୍ବାର ପରୀକ୍ଷା କରିବା ଉଡ଼ନ୍ତା ଥାଳିଆର ଅନ୍ୟତମ ଉଦ୍ଦେଶ୍ୟ ହୋଇପାରେ । ତୃତୀୟତଃ ଥାଳିଆ ଆକାରର ଚେପ୍‌ଟା ବା ସିଗାରେଟ୍ ଆକାରର ଲମ୍ବାଳିଆ ନୂତନ ଆକାଶ ଯାନର ଖୁବ୍ ଉଚ୍ଚ ଆକାଶରେ ବାୟୁ ସହିତ ବାଧା ବା ଘର୍ଷଣ କିପରି ହେବ, ତାହା ଜାଣିବା ଅନ୍ୟତମ ପରୀକ୍ଷା ହେବା ସ୍ୱାଭାବିକ । ପରିଶେଷରେ ଚାଳକବିହୀନ ଯାନର ଗତି, ଦିଗ ପରିବର୍ତ୍ତନ, ଲକ୍ଷ୍ୟସ୍ଥାନରେ ପହଞ୍ଚିବା ଆଦି ବହୁ ପରୀକ୍ଷା ଓ ସେଗୁଡ଼ିକୁ ରେଡ଼ିଓଦ୍ୱାରା ଚଳାଇ ଲକ୍ଷ୍ୟସ୍ଥାନରେ ପହଞ୍ଚାଇବା ସମ୍ଭବପର କି ନା, ସେଗୁଡ଼ିକୁ ବାରମ୍ବାର ପରୀକ୍ଷା କରିବା ଉଡ଼ନ୍ତା ଥାଳିଆର ବହୁମୁଖୀ ଉଦ୍ଦେଶ୍ୟ ଭିତରୁ ଗୋଟିଏ ହୋଇପାରେ । ତେଣୁ ଏହିସବୁ ଦୃଷ୍ଟିରୁ ଆଲୋଚନା କଲେ

ଉଡ଼ନ୍ତା ଥାଳିଆ ଯେ ପୃଥିବୀ ବାହାରର କୌଣସି ଗ୍ରହର ଯାନ ନୁହେଁ, ତାହା ପରିଷ୍କାର ଜଣାପଡ଼ୁଯାଏ ଓ ଲୋକମାନେ ମୃତତୃଷ୍ଣା ପଛରେ ଗୋଡ଼ାଇଲାଭଳି ଅନ୍ୟ ଗ୍ରହ, ଅନ୍ୟ ଗ୍ରହ ହୋଇ ପ୍ରକୃତ ସତ୍ୟଠାରୁ ଦୂରେଇଯିବା ଉଚିତ ନୁହେଁ ।"

ଘନ ଘନ କରତାଳିରେ ବକ୍ତୃତା କକ୍ଷ କମ୍ପି ଉଠିଲା ।

"ଚମତ୍କାର ଚମତ୍କାର ଏହି ବକ୍ତୃତା ! ବକ୍ତାଙ୍କର କି ଗଭୀର ଗବେଷଣା ଅଛି ଏହି ବିଷୟଟି ଉପରେ ! ବଙ୍ଗୀୟ ବିଜ୍ଞାନ ପରିଷଦରେ ଆଜି ପର୍ଯ୍ୟନ୍ତ ଯେତେ ବକ୍ତୃତା ହୋଇଛି, କୌଣସିଟି ଏହାଭଳି ଏତେ ସୁଚିନ୍ତିତ ବା ଗବେଷଣାତ୍ମକ ହୋଇନ ।"

ଲୋକମାନେ ବକ୍ତୃତାର ଉପାଦେୟତା ନେଇ ଏହିଭଳି ଫୁସ୍‌ଫାସ୍ ହେଉଥିବା ବେଳେ ସଭାପତି ରାୟ ଡକ୍ଟର ପଟ୍ଟନାୟକଙ୍କ ପଗ୍ଭରି ସଭାରେ ପ୍ରକାଶ କଲେ ଯେ କାହାର କୌଣସି ବିଷୟରେ ଯଦି ସନ୍ଦେହ ଥାଏ ବା ଅଧିକ ଜାଣିବାକୁ ଇଚ୍ଛୁକ, ତେବେ ସେମାନେ ପଗ୍ଭରିପାରନ୍ତି ।

ବିଦ୍ୟାସାଗର କଲେଜର ପଦାର୍ଥ-ବିଜ୍ଞାନ ଅଧ୍ୟାପକ ଡକ୍ଟର ଘୋଷ ଉଠି ଠିଆହୋଇ ପଗ୍ଭରିଲେ, "ଉଡ଼ନ୍ତା ଥାଳିଆ ମାର୍କିନ୍ ଦେଶର ଗୁପ୍ତଗବେଷଣା ନ ହୋଇ ରୁଷ ଦେଶର ଗୁପ୍ତଗବେଷଣା ବି ହୋଇପାରେ ।" ଏ ସମ୍ପର୍କରେ ଆପଣଙ୍କ ମତ କଅଣ ?

"ହଁ, ସେ ମତକୁ ମଧ୍ୟ ବାଦ୍ ଦିଆଯାଇ ନ ପାରେ । ଉଡ଼ନ୍ତା ଥାଳିଆ ରୁଷୀୟମାନଙ୍କର ଏକ ଗୁପ୍ତ ଗବେଷଣାର ପରୀକ୍ଷା ବୋଲି କେତେକେ ପାଶ୍ଚାତ୍ୟ ବିଶେଷଜ୍ଞ ମତ ଦିଅନ୍ତି । ୧୯୫୩ ମସିହା ନଭେମ୍ବର ମାସ ତା ୧୪ ରିଖ ଓ ୨୧ ତାରିଖ ଦିନ ଜର୍ମାନୀର ଫ୍ରାଙ୍କଫର୍ଟର ମାଗାଜିନ୍‌ରେ ଲେବିଜୋବ୍ ତଥ୍ୟ ଉପରେ ଏକ ଆଲୋଚନା ପ୍ରକାଶ ପାଇଥିଲା । ଏହି ତଥ୍ୟ ଶକ୍ତିର ଅବିନଶ୍ୱରତା ଓ ମାଧ୍ୟାକର୍ଷଣ ଶକ୍ତିର ବିରୁଦ୍ଧାଚରଣ କରୁଛି । ବିନା ଶକ୍ତି ସାହାଯ୍ୟରେ ମଟରଗାଡ଼ି କେମିତି ଚାଲିପାରିବ, ଏହି ତଥ୍ୟ ତାହାର ସୂତ୍ର ଯୋଗାଏ । ବିନା ଶକ୍ତିରେ ଆକାଶଯାନ ମଧ୍ୟ ଚଳାଇ ହେବ, ଏହି ସୂତ୍ର ଅନୁସାରେ । ସେହି ମେଗାଜିନ୍‌ରେ ଅଦ୍ଭୁତ ପ୍ରକାଶ ପାଇଥିଲା ଯେ ୧୯୨୯ ମସିହା ଜୁଲାଇ ମାସରେ ଦଳେ ଜର୍ମାନ୍ ବୈଜ୍ଞାନିକ ରୁଡିଆ ଭ୍ରମଣରେ

ଯାଇଥିଲେ । ସେମାନଙ୍କ ଭିତରେ ଜଣେ ବୈଜ୍ଞାନିକ ଥିଲେ, ତାଙ୍କ ନାଁ ହେଉଛି ହେର ପିଙ୍କେସ । ସେ ଲେବ୍‌ଦଜୋବ୍ ତଥ୍ୟ ସମ୍ବନ୍ଧରେ ଭଲଭାବରେ ଜାଣିଥିଲେ । ସେ ରୁଷିଆରେ ରହି ଏହି ଲେବ୍‌ଦଜୋବ୍ ତଥ୍ୟ ଉପରେ ଗବେଷଣା ଚଳାଇଲେ । ସୋଭିଏଟ୍ ଗବେଷଣାଗାରରେ ଲେବ୍‌ଦଜୋବ୍ ତଥ୍ୟ ଅନୁଯାୟୀ ଏକ ଅପୂର୍ବ ଲେବ୍‌ଦଜୋବ୍ ରଶ୍ମି ସୃଷ୍ଟି କରାଗଲା । ୧୯୪୦-୧୯୪୨ ମଧ୍ୟରେ ଏଥିପାଇଁ ଏକ ବିରାଟ ଗବେଷଣାଗାର ସୋଭିଏଟ୍ ରୁଷିଆର ମେଗ୍‌ନିଟୋଗରସ୍କ ସହରଠାରେ ପ୍ରତିଷ୍ଠା କରାଗଲା । ଏଠାରେ ଲେବ୍‌ଦଜୋବ୍ ରଶ୍ମି ବେଳେବେଳେ ତରଙ୍ଗ ରୂପରୁ କଣାରୂପକୁ ଓ କଣାରୂପରୁ ତରଙ୍ଗ ରୂପକୁ ରୂପାନ୍ତରିତ ହେଉଥିଲା ।

୧୯୪୨ ମସିହା ନଭେମ୍ବର ମାସରେ ଆଣ୍ଡ୍ରେଇ ଗୋରେୟେଭ୍ ନାମକ ଜନୈକ ସୋଭିଏଟ ପଦାର୍ଥବିଦ୍ୟାବିତ୍ ଇଉରାଲ୍ ପର୍ବତ ନିକଟରେ ଏହି ରଶ୍ମି ଉପରେ ପରୀକ୍ଷା ଚଳାଇଥିଲେ । ସୋଭିଏଟ୍ ଲାଲବାହିନୀ ନିର୍ଦ୍ଦେଶରେ ଏହି ପରୀକ୍ଷା ଚାଲୁଥିଲା । ଆଶା କରାଯାଉଥିଲା ଲେବ୍‌ଦଜୋବ୍ ରଶ୍ମିକୁ ବ୍ୟବହାର କରି ଏକ ପ୍ରକାର ବିଚିତ୍ର ଧରଣର ଯାନ ତିଆରି କରିହେବ । ଏହି ଯାନ ସାହାଯ୍ୟରେ ସେମାନେ ନାଜିମାନଙ୍କର ସମ୍ମୁଖୀନ ହେବେ ବୋଲି ଆଶା କରିଥିଲେ । ଶୁଣାଯାଏ ଯେ ଏହି ରଶ୍ମି ସାହାଯ୍ୟରେ ଗୋଟିଏ ମଟର ଗାଡ଼ି ଚାଲି ପାରୁଥିଲା ।

ପିଙ୍କେସ୍ ଓ ଗୋରେୟେଭ୍‌ଙ୍କ ଗବେଷଣା ଅତି ରହସ୍ୟଜନକ ଜଣା ପଡୁଥିଲା । ୧୯୩୮ ମସିହାରେ ପ୍ରକାଶ ପାଇଲା ଯେ ରୁଷୀୟ ଗୁପ୍ତ ପୋଲିସ ସଂସ୍ଥା ହଠାତ୍ ଦିନେ ହେର୍ ପିଙ୍କେସ୍ ଓ ଆଉ କେତେକ ରୁଷୀୟ ବୈଜ୍ଞାନିକଙ୍କୁ ବନ୍ଦୀ କଲେ ଓ ସେମାନଙ୍କୁ ଟୋହାନେ ଦ୍ୱୀପରେ ବନ୍ଦୀ କରି ରଖିଲେ । ସେମାନଙ୍କର ଦୋଷ ହେଲା, ସେମାନେ ରୁଷୀୟ ଗୁପ୍ତ ପୋଲିସ ସଂସ୍ଥାର ସର୍ବେସର୍ବା ଲାଭ୍‌ରେଣ୍ଟି ବେରିଆଙ୍କୁ କହିଲେ ଯେ ଏହି କାମ ଶେଷ କରିବାକୁ ଆହୁରି ଚଉଦଦିନ ଲାଗିବ । ବେରିଆ ଚାହୁଁଥିଲେ ଏହି ଗବେଷଣା ଖୁବ୍ ଶୀଘ୍ର ଶେଷ ହୁଅନ୍ତା ଓ ରୁଷୀୟମାନଙ୍କ ହାତରେ ଖୁବ୍ ଶକ୍ତିଶାଳୀ ଯାନ ରହନ୍ତା । ସେହି ଦ୍ୱୀପରେ ପିଙ୍କେସ୍ ବନ୍ଦୀ ରହି ସେହି ରଶ୍ମି ଉପରେ ଗୁପ୍ତରେ ପୁଣି ଗବେଷଣା ଚଳାଇଲେ । ବେରିଆ ପରେ ଏହି ଗବେଷଣାକୁ ଭାରସିନାନ୍ ନାମକ ଜନୈକ ରୁଷୀୟ ବୈଜ୍ଞାନିକଙ୍କ ଦାୟିତ୍ୱରେ ଦେଲେ ।

ସେ ୧୯୪୮ ମସିହା ସୁଦ୍ଧା ପାଞ୍ଚଟା ଅଦ୍ଭୁତ ଯାନ ତିଆରି କଲେ ଯାହାକି ଏତେ ବେଗରେ ଯାଉଥିଲା, ଯେଉଁ ବେଗକୁ ଧାରଣା କରିବା ଅତୀବ କଷ୍ଟକର । ଏହି ଲେବଜେବ୍ ରଶ୍ମି ସାହାଯ୍ୟରେ ସେଗୁଡ଼ିକ ଚଳୁଥିଲା ।

ଅଧ୍ୟାପକ ହେରମେନ୍ ଓବୋର୍ଥ ଯେ କି ବର୍ତ୍ତମାନ ଆମେରିକାରେ ରହୁଛନ୍ତି ଓ ଜର୍ମାନୀରେ ରକେଟ୍ ବିଜ୍ଞାନର ଜନକ ଭାବରେ ପରିଚିତ, ସେ ମତ ଦିଅନ୍ତି ଯେ ଏହିଭଳି ଲେବଜେବ୍ ରଶ୍ମି ପରିଚାଳିତ ଯାନ ସମ୍ଭବପର । ଏହି ଘଟଣାଟି ଯଦି ସତ ହୁଏ, ତେବେ ଏହିସବୁ ଉଡ଼ନ୍ତା ଥାଳିଆକୁ ସୋଭିଏଟ୍‌ମାନଙ୍କର ନାନା ପରୀକ୍ଷା ବୋଲି କୁହାଯିବା ଅସମ୍ଭବ ନୁହେଁ । ଲେବଜେବ୍ ତଥ୍ୟ ଏବେ ବି ଏକ ପ୍ରହେଳିକାମୟ ତଥ୍ୟ ଭାବରେ ବିଜ୍ଞାନ ଜଗତରେ ପରିଚିତ ।

ଏହି ତଥ୍ୟର ଜନକ ହେଉଛନ୍ତି ଜନୈକ ଜର୍ମାନ୍ ବୈଜ୍ଞାନିକ, ତାଙ୍କ ନାଁ ହେଉଛି ଲେବଜେବ୍ । ସେ ଜର୍ମାନୀସ୍ଥ ବର୍ଲିନ୍ ସହରରେ ୧୯୦୬ ମସିହାରେ ଗବେଷଣା କରୁଥିଲେ । ତାଙ୍କ ତଥ୍ୟ ହେଉଛି, ସାରା ମହାଶୂନ୍ୟ ଏକ ଅଜଣା ରଶ୍ମି ଦ୍ୱାରା ପୂରି ରହିଛି । ଏହି ରଶ୍ମି ସବୁ ଦିଗରୁ ଆସୁଛି । ଏହି ରଶ୍ମି ସବୁ ଆଡ଼ୁ ଆସି ପଡ଼ୁଥିବାରୁ ମହାଶୂନ୍ୟରେ ଥିବା ବସ୍ତୁଗୁଡ଼ିକ ନିଜ ନିଜ ଓଜନ ହରାଉଛନ୍ତି । ଏହି ରଶ୍ମିକୁ ଯଦି ରୁଦ୍ଧ କରି ଦିଆଯାଇ-ପାରେ କିମ୍ବା ଏହାକୁ ଦୁର୍ବଳ କରି ଦିଆଯାଇପାରେ, ତେବେ ଏଥିରୁ ଏକ ବିରାଟ ପରିମାଣରେ ଶକ୍ତି ନିର୍ଗତ ହେବ । ରୁଷୀୟମାନେ ଏମିତି ଏକ ମିଶ୍ରଧାତୁ ବାହାର କରି ପାରିଥିଲେ, ଯାହାକି ଲେବଜେବ୍ ରଶ୍ମିକୁ ପୂରାପୂରି ରୁଦ୍ଧ କରିଦେଇ ପାରିବ, ସୌରରଶ୍ମିକୁ ଦୁଇଟି ସ୍ୱଚ୍ଛ ସ୍ଫଟିକ ରୁଦ୍ଧ କଲା ଭଳି । ଏହି ମିଶ୍ରଧାତୁ ଦୁଇବର୍ଷ ବ୍ୟବହୃତ ହେଲା ପରେ ଦୁର୍ବଳ ହୋଇଯାଏ; କିନ୍ତୁ ବଦଳାଇ ଦେଲେ ପୁଣି କାମ କରେ । ଏହି ଉପାୟରେ ରୁଷୀୟମାନେ ଏହି ଅଦ୍ଭୁତ ଯାନ ସୃଷ୍ଟି କରିଥିବାର ଜନରବ ଶୁଣାଯାଏ । କିନ୍ତୁ ଏହି ବିଷୟଟି କେତେଦୂର ସତ୍ୟ କହିବା ଅତୀବ କଷ୍ଟକର ।"

"କିନ୍ତୁ ସାର୍" ସିଟି କଲେଜର ରସାୟନାଧ୍ୟାପକ ଡକ୍ଟର ଚୌଧୁରୀ ଠିଆହୋଇ କହିଲେ, "ସୋଭିଏଟ୍ ସରକାର ଏହି କେତେଦିନ ତଳେ ଏକ ଥାଳିଆ ଆକାରର ମହାଶୂନ୍ୟ ଯାନର ଚିତ୍ର ପ୍ରକାଶ କରିଛନ୍ତି । ଏହି ଗୋଲାକାର ମହାକାଶଯାନ ବହୁ ପରୀକ୍ଷା ପରେ ମହାଶୂନ୍ୟକୁ

ଛଡ଼ାଯିବାର ବ୍ୟବସ୍ଥା ହୋଇଛି । କିଏ କହିପାରେ ପୃଥିବୀର ବିଭିନ୍ନ ସ୍ଥାନରେ ଦେଖାଦେଇଥିବା ଉଡ଼ନ୍ତା ଥାଳିଆ ସୋଭିଏତ୍‌ମାନଙ୍କର ଏହି ଗୋଲକାର ମହାକାଶଯାନର ପରୀକ୍ଷା ନୁହେଁ ବୋଲି ? ଏହା ବ୍ୟବହାର ଅବସ୍ଥାକୁ ଆସିବା ପୂର୍ବରୁ ଯେ ବହୁବର୍ଷ ପରୀକ୍ଷିତ ହୋଇଥିବ ଏଥିରେ ସନ୍ଦେହ କରିବାର କିଛି ନାହିଁ । ସେମାନଙ୍କ ପରୀକ୍ଷା ହୁଏ ତ ଏହି ରହସ୍ୟପୂର୍ଣ୍ଣ ଉଡ଼ନ୍ତା ଥାଳିଆର ରହସ୍ୟ ଭିତରେ ରହିଯାଇଥିବ ?”

“ତା’ ହୋଇପାରେ; କିନ୍ତୁ ମୁଁ ସେଥିରେ ଏକମତ ନୁହେଁ । କାରଣ ଋଷୀୟମାନଙ୍କ ପ୍ରକାଶିତ ଗୋଲକାର ଉଡ଼ନ୍ତା ଯାନର ଚିତ୍ର ମୁଁ ଦେଖିଛି ଓ ସେ ସମ୍ପର୍କରେ ମଧ୍ୟ ଯଥେଷ୍ଟ ଅନୁଧ୍ୟାନ କରିଛି । ଯୁକ୍ତରାଷ୍ଟ୍ର ସରକାରଙ୍କ ସାମରିକ ବିଭାଗ ‘ଏଭ୍ରୋ’ ନାମକ ଏକ ଥାଳିଆ ଆକାର ସଦୃଶ ଯେଉଁ ଯାନ ସୈନ୍ୟବାହିନୀ ପାଇଁ ଉଦ୍ଭାବନ କରିଛନ୍ତି, ସେହି ଗବେଷଣା ପଛରେ ହୁଏତ ଉଡ଼ନ୍ତା ଥାଳିଆର ରହସ୍ୟ ଲୁକ୍‌କାୟିତ ରହିପାରେ । ଏହି ‘ଏଭ୍ରୋ’ ଯାନର ପରୀକ୍ଷା ଯୁକ୍ତରାଷ୍ଟ୍ରର ନିଉଇଂଲଣ୍ଡ ଓ ମଧ୍ୟ ପଶ୍ଚିମ ଅଂଶରେ ହେଉଥିବାର ଯଥେଷ୍ଟ ପ୍ରମାଣ ମୁଁ ପାଇଛି । ଏହା ଆକାଶରେ ଉଡ଼ିଲେ ଅବିକଳ ଉଡ଼ନ୍ତା ଥାଳିଆ ଭଳି ଦିଶେ । ଉଡ଼ନ୍ତା ଥାଳିଆର ରହସ୍ୟ ଭିତରେ ଋଷୀୟମାନଙ୍କ ଗବେଷଣା ବ୍ୟତୀତ ମାର୍କିନମାନଙ୍କ ଗବେଷଣା ଅଧିକ ରହିଛି ବୋଲି ପୃଥିବୀର ବହୁ ବିଶେଷଜ୍ଞ ବିଶ୍ୱାସ କରନ୍ତି ।”

“ସାର୍” ସାଏନ୍‌ସ କଲେଜର ଜନୈକ ଯୁବକ ଅଧ୍ୟାପକ ଠିଆହୋଇ ପଚାରିଲେ, “ପୃଥିବୀର ବିଭିନ୍ନ ସ୍ଥାନରେ ଏମିତି କେତେକ ଉଡ଼ନ୍ତାଥାଳିଆ ଉଡ଼ିବାର ଦେଖାଯାଇଛି, ଯେଉଁଗୁଡ଼ିକ କିଛି ସମୟପାଇଁ ଦେଖାଯାନ୍ତି; ହଠାତ୍ ପୁଣି ଅଦୃଶ୍ୟ ହୋଇଯାଆନ୍ତି । ପୁଣି କିଛି ସମୟପରେ ପୂର୍ବଭଳି ଦିଶନ୍ତି । ସେହିସବୁ ଉଡ଼ନ୍ତା ଥାଳିଆ ବେଳେବେଳେ ସେମାନଙ୍କର ଏହି ଅଦୃଶ୍ୟ ହେବା ଶକ୍ତିକୁ ବାରମ୍ବାର ଦେଖାଇଥାନ୍ତି । ସେସବୁ ଉଡ଼ନ୍ତା ଥାଳିଆ ସମ୍ପର୍କରେ ଆପଣଙ୍କ ମତ କ’ଣ ?”

ଅଧ୍ୟାପକ ପଟ୍ଟନାୟକ ଉଠି ଠିଆହୋଇ କହିଲେ, “ଏ ସମ୍ପର୍କରେ କୌଣସି ନିର୍ଦ୍ଦିଷ୍ଟ ମତ ଦେବା ସମ୍ଭବ ନୁହେଁ, ତେବେ, ବହୁ ଚିନ୍ତାଶୀଳ ବ୍ୟକ୍ତି ଏହି ଧରଣର ଉଡ଼ନ୍ତାଥାଳିଆକୁ ଆମ ବସ୍ତୁଜଗତର ବୋଲି ଭାବନ୍ତି ନାହିଁ । ସେମାନଙ୍କ ମତରେ ସେଗୁଡ଼ିକ ଚତୁଃ ପରିସର (Four dimensional)

ଜଗତର ଅନ୍ତର୍ଗତ; ଠିକ୍ ଭଗବାନ ବା ଈଶ୍ୱରଙ୍କ୍ ଅନେକେ ଯେମିତି ଚତୁଃପରିସର ଜଗତର ବୋଲି ମତ ଦିଅନ୍ତି । କେତେକଙ୍କ ମତରେ ଏହିଭଳି ଉଡ଼ନ୍ତା ଥାଳିଆର ଶରୀର ଏକ ଅଦ୍ଭୁତ ବ୍ୟୋମବସ୍ତୁ (Etherial matter)ରୁ ତିଆରି । ତେଣୁ ଏହା ବସ୍ତୁତଃ ସତ; କିନ୍ତୁ ଅଦୃଶ୍ୟ । ବେଳେବେଳେ ଯାନର ଗତି ନେଇ ଏହା ଦୃଶ୍ୟମାନ ହୋଇପାରେ । ଏହି ଯାନର ଯେ କୌଣସି ଆକୃତି ହୋଇପାରେ ଓ ଏଗୁଡ଼ିକୁ ମାନସିକ ବଳଦ୍ୱାରା ମଧ୍ୟ ପରିଚାଳିତ କରିହୁଏ । ଚତୁଃପରିସର (Four dimensional) ଜଗତର ପଦାର୍ଥ, କେମିତି ହୋଇ-ପାରେ, ଆମ ପକ୍ଷରେ ଧାରଣା କରିବା ଅତୀବ କଷ୍ଟକର । ତେବେ ସେ ଜଗତ ଯେ ଆମ ଜଗତଠାରୁ ଢେର ଅଲଗା, ଏହା ନିଃସନ୍ଦେହରେ କୁହାଯାଇ-ପାରେ । ସେହି ଜଗତରୁ ଆସୁଥିବା ଉଡ଼ନ୍ତା ଥାଳିଆ ଯେ ସେହିପରି ବିଚିତ୍ର ହୋଇଥିବ, ଏଥିରେ ସନ୍ଦେହ କରିବାର କିଛି ନାହିଁ । ତେଣୁ ଏହି ଧରଣର ଯାନ ସେହି ଜଗତର କି କଅଣ କହିବା ଅତୀବ କଷ୍ଟକର । ଏହି କିଛିଦିନ ତଳେ ସେ ସମ୍ବନ୍ଧୀୟ ଗୋଟିଏ ଦୁଇଟି ଖବରରୁ ଆପଣମାନେ ଯାହା ଧାରଣା କରି ପାରିବେ । ଏହି ଖବରଗୁଡ଼ିକର ସତ୍ୟାସତ୍ୟ ମୋ ପକ୍ଷରେ କହିବା ମଧ୍ୟ କଷ୍ଟକର ।

୧୯୫୩ ମସିହା ସେପ୍‌ଟେମ୍ବର ମାସ ତା ୧୬ ରିଖ ଦିନ ସାଢ଼େ ଦଶଟାବେଳେ କାନାଡ଼ାର ଅଣ୍ଟେରିଓ ରାଜ୍ୟର ଲଣ୍ଡନ ସହରଠାରେ ଦୁଇ ଭାଇ ମଟର ଗାଡ଼ି ଚଳାଇ ଯାଉଥିଲାବେଳେ ଏକ ଅଦ୍ଭୁତ ଦୃଶ୍ୟ ଦେଖିଲେ । ସେମାନେ ଯାଉଁ ଯାଉଁ ହଠାତ୍ ଦେଖିଲେ ସେମାନଙ୍କଠାରୁ କୋଡ଼ିଏ ଫୁଟ ଦୂର ଆକାଶରେ କ'ଣ ଗୋଟାଏ ବୁଲୁଛି । ଏହା ପୃଥିବୀ-ପୃଷ୍ଠଠାରୁ ପ୍ରାୟ ଦଶଫୁଟ ଉଚ୍ଚରେ ଥିଲା । ଏହା ଦେଖିବାକୁ ଈଷତ୍ ଧଳା, ସେଭଳି ନିର୍ଦ୍ଦିଷ୍ଟ ଆକାର ମଧ୍ୟ ନାହିଁ । ଅନାଉଁ ଅନାଉଁ ଏହାର ରୂପ ଓ ଆକାର ବଦଳିଗଲା ଓ ସଙ୍ଗେ ସଙ୍ଗେ କେଉଁଆଡ଼େ ଅନ୍ତର୍ହିତ ହୋଇଗଲା ।

୧୯୫୪ ମସିହା ଜୁନ୍ ମାସ ତା ୩୦ ରିଖ ସୂର୍ଯ୍ୟାସ୍ତବେଳେ ବ୍ରିଟିଶ ଏୟାରୱେଜ କୋମ୍ପାନୀର ଏକ ଉଡ଼ାଜାହାଜ ଚାଳକ ଏକ ବଡ଼ ଉଡ଼ାଜାହାଜ ଚଳାଇ ଯାଉଁ ଯାଉଁ ଦୂର ଆକାଶରେ ଏକ ବିରାଟ ମହାଶୂନ୍ୟଯାନ ଦେଖିଲେ । ଏହି ଯାନ ସହିତ ସାତଗୋଟି ଉଡ଼ନ୍ତା-ଥାଳିଆ ସଂଶ୍ଳିଷ୍ଟ ଥିଲା । ଉଡ଼ାଜାହାଜ ଚାଳକ ଅଶୀ ମାଇଲ ପର୍ଯ୍ୟନ୍ତ ଏହା ସହିତ ସମାନ୍ତରାଳ ଭାବରେ ଗତି କରିଥିଲେ । ଏହି ଯାନଟି

ଥରକୁ ଥର ନଜର ରୂପ ଓ ଆକାର ବଦଳାଇବାର ଦେଖି ଜାହାଜଗୁଳକ ଓ ଜାହାଜର ପରିଚାଳକାମାନେ ଅତ୍ୟଧିକ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଇଥିଲେ । ଯେତେବେଳେ ଏହି ଯାନଟି ଜାଣିପାରିଲା ଯେ ନିକଟସ୍ଥ ଉଡ଼ାଜାହାଜ-ଘାଟିରୁ ସାବ୍ରଜେଟ୍ ତାକୁ ଠାବ କରିବାପାଇଁ ପ୍ରେରିତ ହେଲା, ଯାନଟି ସଙ୍ଗେ ସଙ୍ଗେ ଅନାଇଁ ଅନାଇଁ କେଉଁଆଡ଼େ ଅଦୃଶ୍ୟ ହୋଇଗଲା ।

ଆଶୁତୋଷ କଲେଜର ପଦାର୍ଥବିଜ୍ଞାନ ଅଧ୍ୟାପକ "ଡକ୍‌ଟର ଚକ୍ରବର୍ତ୍ତୀ ଉଠି ଠିଆ ହୋଇ ପଚାରିଲେ, "ସାର୍", ଉଡ଼ନ୍ତା ଥାଳିଆ, କୌଣସି ବସ୍ତୁର ଗୁପ୍ତ ଗବେଷଣା ବା ଅନ୍ୟ ଗ୍ରହ ଉପଗ୍ରହର ଉଡ଼ନ୍ତା ଯାନ ନ ହୋଇ ଏକ ଆଲୋକୀୟ ଦୃଷ୍ଟିଭ୍ରମ ବି ହୋଇପାରେ । ଆପଣଙ୍କର ସେ ସମ୍ପର୍କରେ ମତ କଅଣ ?

ଡକ୍‌ଟର ପଟ୍ଟନାୟକ ଈଷତ୍ ହସି ଠିଆ ହୋଇ କହିଲେ, "ଆଧୁନିକ ବୈଜ୍ଞାନିକମାନଙ୍କ ମଧ୍ୟରୁ ଅନେକେ ମତପୋଷଣ କରନ୍ତି ଯେ ଉଡ଼ନ୍ତାଥାଳିଆ ଗ୍ରହଗ୍ରହାନ୍ତର ଜୀବମାନଙ୍କର ଯାନ ନୁହେଁ କି ଏହା ପୃଥିବୀର କୌଣସି ବସ୍ତୁର ଗୋପନୀୟ ଗବେଷଣାର ପରୀକ୍ଷା ନୁହେଁ । ସେମାନଙ୍କ ମତରେ ଏହା ଆକାଶରେ ବେଳେବେଳେ ଦୃଶ୍ୟମାନ ହେଉଥିବା ଆଲୋକୀୟ ଦୃଷ୍ଟିଭ୍ରମ ଛଡ଼ା ଅନ୍ୟ କିଛି ହୋଇ ନ ପାରେ । ଏହି ମତପୋଷଣ କରୁଥିବା ବୈଜ୍ଞାନିକମାନଙ୍କ ଭିତରୁ ଆମେରିକାର ହାର୍ଭାର୍ଡ୍ ବିଶ୍ୱବିଦ୍ୟାଳୟର ପ୍ରଧାନ ଜ୍ୟୋତିର୍ବିଦ୍ ଡୋନାଲଡ୍ ମେଞ୍ଜେଲ ଜଣେ ।

ମେଞ୍ଜେଲ୍ ମତ ଦିଅନ୍ତି ଉଡ଼ନ୍ତାଥାଳିଆ ଭଳି ବହୁ ରହସ୍ୟଜନକ ଘଟଣା ପାଣିପାଗଜନିତ ନାନାପ୍ରକାର ଦୃଶ୍ୟ ଛଡ଼ା ଆଉ କିଛି ନୁହେଁ । ସେ ତାଙ୍କ ଲିଖିତ ପୁସ୍ତକ '**Flying Saucer**'ରେ ଏହାର ନାନାପ୍ରକାର ବ୍ୟାଖ୍ୟା କରିଛନ୍ତି । ଏହି ପୁସ୍ତକଟି ୧୯୫୩ ମସିହାରେ 'ହାର୍ଭାର୍ଡ୍ ଇଉନିଭରସିଟି ପ୍ରେସ୍'ଦ୍ୱାରା ପ୍ରକାଶିତ ହୋଇଥିଲା ।

ତାଙ୍କ ମତରେ ଉଡ଼ନ୍ତାଥାଳିଆ ଭଳି ଦୃଶ୍ୟ ଆକାଶର ମେଘ ଭିତରେ ଥିବା କିମ୍ବା ବାୟୁମଣ୍ଡଳରେ ଭସିବୁଲୁଥିବା ତୁଷାରକଣା ଉପରେ ସୂର୍ଯ୍ୟ ବା ଚନ୍ଦ୍ରଙ୍କର କିରଣ ପ୍ରତିଫଳନ ହେତୁ ଦିନରେ ବା ରାତିରେ ଏମିତି ଦୃଶ୍ୟ ସୃଷ୍ଟି କରିପାରେ । ତାଙ୍କ ମତରେ ଏମିତି ଏକ ପ୍ରତିଫଳିତ ଆଲୋକ ପଛରେ ଗୋଡ଼ାଇ ମେଣ୍ଟେଲ୍ ମୃତ୍ୟୁ ବରଣ କରିଥିଲେ ।

ଆଜି କେତେକ କ୍ଷେତ୍ରରେ ଉଡ଼ନ୍ତାଥାଳିଆ ଆକାଶର ଏକ ମରୀଚିକା ହୋଇପାରେ । ମରୁଭୂମିର ମରୀଚିକା ଯେମିତି ମସ୍ତିଷ୍କର ଏକ ଭ୍ରମ, ଏହା ସେଭଳି ଏକ ଭ୍ରମ ହୋଇପାରେ ।

ଲୁବ୍‌କଠାରେ ଦେଖାଯାଇଥିବା ଆଲୋକମାଳା ସମ୍ପର୍କରେ ଅଧ୍ୟାପକ ମେଞ୍ଜେଲ୍‌ କହନ୍ତି ଯେ, ଆକାଶର ଅବସ୍ଥା ନେଇ ବେଳେବେଳେ ପୃଥିବୀର ଏକ ଛାଇ ଆକାଶରେ ପଡ଼େ । ଦୂର ରାସ୍ତାର ଆଲୋକମାଳା ବା କୌଣସି ଏକ ସ୍ଥାନର ଗୋଟି ଗୋଟିକିଆ ଆଲୋକ ପ୍ରତିଫଳିତ ହୋଇ ଆକାଶରେ ଭାସି ବୁଲିବାର ଦେଖାଯାଏ । ବାୟୁର ଗତି ହେତୁ ଏହି ପ୍ରତିବମ୍ବ ଏପଟ ସେପଟ ଘୂରି ବୁଲିବାର ସମ୍ଭାବନା । ଏହି ପ୍ରତିଫଳିତ ଆଲୋକର ଆଲୋକମାଳାକୁ ରେଡ଼ାର ଯନ୍ତ୍ର ବି ଭ୍ରମ କରିପାରେ । ରେଡ଼ାର ପରଦାରେ ଦିଶୁଥିବା ଉଡ଼ନ୍ତାଥାଳିଆ ଏହାରି ଯୋଗୁ ସମ୍ଭବ ହୋଇପାରେ ବୋଲି ସେ ମତ ଦିଅନ୍ତି । ଅଧ୍ୟାପକ ମେଞ୍ଜେଲ୍‌ ତାଙ୍କ ତଥ୍ୟକୁ ପ୍ରମାଣିତ କରିବାପାଇଁ ଏହି ଧରଣର ପ୍ରତିଫଳନ ନିଜ ଗବେଷଣାଗାର ଭିତରେ ସୃଷ୍ଟି କରିପାରିଥିଲେ ।

ପରିଶେଷରେ ସେ ମନ୍ତବ୍ୟ ଦେଇଛନ୍ତି ଯେ, 'ଉଡ଼ନ୍ତାଥାଳିଆ' କଥା ଅନେକ ସ୍ଥଳରେ ଅଜବ୍‌ ମିଛ କଥା ବା ମନଗଢ଼ା କଥା ବୋଲି ପ୍ରମାଣିତ ହୋଇଛି । ସେ ଏହାକୁ ପ୍ରମାଣ କରିବା ପାଇଁ ନିଜର ଏକ ଅନୁଭୂତି ବର୍ଣ୍ଣନା କରିଥିଲେ । ଆମେରିକାର କଲରାଡୋ ରାଜ୍ୟରେ ଏକ ଗ୍ରାମରେ ଗୋଟିଏ ମେଳା ହୋଇଥିଲା । ପ୍ରଚାର କରାଯାଇଥାଏ ଯେ ସେଠାରେ ଖସିପଡ଼ିଥିବା ଏକ ଉଡ଼ନ୍ତାଥାଳିଆ ମେଳାରେ ପ୍ରଦର୍ଶିତ ହେବ । ଏହି ଖବର ପାଇ ମେଞ୍ଜେଲ୍‌ କେତେଜଣବନ୍ଧୁଙ୍କ ସହିତ ମେଳା ଆରମ୍ଭ ଦିନ ଯାଇ ସେଠି ପହଞ୍ଚିଲେ । ଦେଖିଲାବେଳକୁ ସେଠି ଉଡ଼ନ୍ତା-ଥାଳିଆ ଆଦି କିଛି ନାହିଁ । ଲୋକଙ୍କଠାରୁ ଶୁଣିବାକୁ ପାଇଲେ ଯେ ଯୁଦ୍ଧ-ବିଭାଗ ଏହାକୁ ଜବତ କରି ଗୁପ୍ତ ସ୍ଥାନକୁ ସ୍ଥାନାନ୍ତରିତ କରିଦେଇଛି । ମେଞ୍ଜେଲ୍‌ ସନ୍ଦେହ କରନ୍ତି ପ୍ରକୃତରେ ସେ ଘଟଣା ସତ କି କଅଣ ! ଏମିତି ଏକ ଥାଳିଆ ଖସିପଡ଼ିବା ମିଛ ପ୍ରଚାର ବି ହୋଇପାରେ ।

ସେ ନିଜର ଅନୁଭୂତିରୁ ଗୋଟିଏ ମଜା ଗପ କହନ୍ତି । ୧୯୩୮ ମସିହାରେ ଅରସନ୍‌ ଓ୍ୱେଲସ୍‌ଙ୍କ "War of the worlds'ର ଏକ

ରେଡ଼ିଓ-ନାଟକ ଆମେରିକାର ନିଉଜେର୍‌ସି ରେଡ଼ିଓ ଷ୍ଟେସନ୍‌ରୁ ପ୍ରଚାରିତ ହେଉଥାଏ । ଏହି ନାଟକଟି ଏତେ ହୃଦୟଗ୍ରାହୀ ହୋଇଥିଲା ଯେ ଲୋକେ ଏହାକୁ ସତ ଘଟଣା ବୋଲି ଧରିନେଇଥିଲେ । ମଙ୍ଗଳଗ୍ରହର ଅଧିବାସୀମାନେ ପୃଥିବୀ ଆକ୍ରମଣ କରିବାକୁ ଆସୁଛନ୍ତି, ଏହି କଥା କେଇପଦ ରେଡ଼ିଓରୁ ଶୁଣିଲାକ୍ଷଣି ଲୋକେ ଏସ୍ତବ୍ୟସ୍ତ ହୋଇପଡ଼ିଥିଲେ । ରେଡ଼ିଓ ଶୁଣୁ ଶୁଣୁ ନିଉଜେର୍‌ସି ରାଜ୍ୟସ୍ଥ କେତେକ ଶ୍ରୋତା କହିବାର ଶୁଣାଗଲା ଯେ, ଏହା ଏକ ସତ ଘଟଣା । କେତେକ କହିଲେ, "ହେଇ, ମଙ୍ଗଳଗ୍ରହ ଅଧିବାସୀଙ୍କ ବନ୍ଧୁକ ଆଓ୍ୱାଜ ଶୁଣାଯାଉଛି ।" କେତେକ କହିଲେ, "ଦେଖ ଦେଖ, ଯୁଦ୍ଧଆଲୋକ ଓ ଧୂଆଁ କେମିତି ଦିଗ୍‌ବଳୟରେ ଦିଶୁଛି ।" କେତେକ କହିଲେ, "ମଙ୍ଗଳଗ୍ରହର ଲୋକେ ଫୁସ୍‌ଫାସ ହେଉଥିବା ସେମାନଙ୍କୁ ଶୁଭୁଛି ।"

ପ୍ରକୃତରେ ଏହି ଘଟଣା ଉଡ଼ନ୍ତାଥାଳିଆ ଖବର କେତେଦୂର ବିଶ୍ୱାସଯୋଗ୍ୟ ବିଚାରକୁ ନେବା କଥା ।

ଉଡ଼ନ୍ତାଥାଳିଆ ସମ୍ପର୍କରେ ଆମେରିକାର ଏକ ପ୍ରସିଦ୍ଧ ପଦାର୍ଥ ବିଦ୍ୟାବିତ୍ ଜର୍‌ନର ଲିଡ଼େଲ ୧୯୫୧ ମସିହାରେ ସୂଚାଇଥିଲେ ଯେ ଉଡ଼ନ୍ତାଥାଳିଆ ଅନ୍ୟ କୌଣସି ଗ୍ରହର ଯାନ ନୁହେଁ । ଏଗୁଡ଼ାକ କେତେକ ପାଣିପାଗ ପାଇଁ ବ୍ୟବହୃତ ହେଉଥିବା ବେଲୁନ୍ ଛଡ଼ା ଅନ୍ୟକିଛି ନୁହେଁ । ବଡ଼ ବଡ଼ ପ୍ଲାଷ୍ଟିକ୍ ତିଆରି ବେଲୁନ୍ ଭିତରେ ନାନାପ୍ରକାର ପାଣିପାଗ ଗବେଷଣା ପାଇଁ ଯନ୍ତ୍ରପାତି ଥୋଇ ଆକାଶକୁ ପଠାଯାଇଥାଏ । ଏସବୁ ବେଲୁନ୍ ଖୁବ୍ ଉଚ୍ଚରେ ପହଞ୍ଚିଲେ, ତଳକୁ ଥାଳିଆ ଆକାରରେ ଦିଶେ । ଏଗୁଡ଼ାକ ବେଳେ ବେଳେ ଖୁବ୍ ଦୂର ପର୍ଯ୍ୟନ୍ତ ଉଡ଼ିଯାଇ ପାରନ୍ତି ଏପରିକି ଏଗୁଡ଼ିକ ବେଳେବେଳେ ଆଟଲାଣ୍ଟିକ୍ ମହାସାଗରକୁ ଅତିକ୍ରମ କରିବା ଦେଖାଯାଇଛି ।

"ସାର୍ ! ବହୁ ଉଡ଼ନ୍ତାଥାଳିଆ ଶକ୍ତିଶାଳୀ ବିଦ୍ୟୁତ୍ ଲାଇନ୍‌ଠାରେ କାହିଁକି ଦେଖାଯାଏ ସେ ସମ୍ବନ୍ଧରେ କିଛି ଆଲୋକପାତ କରିବେ କି ? ବେଥୁନ୍ କଲେଜର ଜଣେ ମହିଳା ଅଧ୍ୟାପକ ଉଠି ଠିଆହୋଇ ପଚାରିଲେ, "ଅନ୍ୟ ଗ୍ରହରୁ ଆସୁଥିବା ଉଡ଼ନ୍ତାଥାଳିଆ ଯାତ୍ରୀମାନେ ଆମ ବିଦ୍ୟୁତ୍ ଲାଇନ୍‌ରୁ ବିଦ୍ୟୁତ୍‌ଶକ୍ତି ଗ୍ରହଣ କରିବାପାଇଁ ସେଠାରେ ଏକତ୍ରିତ ହେଉଥିବା କଥା କ'ଣ ସତ ?"

ଡକ୍‌ଟର ପଟ୍ଟନାୟକ ଉଠି କହିଲେ, "ନା, ତା ଠିକ୍ ନୁହେଁ, ସେ ସମ୍ବନ୍ଧରେ ନାନା ମତ ଅଛି । ଏଭିଏସନ୍ ଉଇକ୍ ଆଣ୍ଡ ସ୍ପେସ୍ ଟେକ୍‌ନୋଲଜି ପତ୍ରିକାର ସମ୍ପାଦକ ଉଇକ୍ ଫିଲପ୍ କ୍ଲାସ ମତ ଦିଅନ୍ତି ଯେ କେତେକ କାରଣ ଯୋଗୁଁ ଆୟନୀକୃତ ବାୟୁ ତଡ଼ିତାୟୁକ୍ତ ରେଣୁକୁ ଧରି ବିଦ୍ୟୁତ୍ ଲାଇନ୍‌ଠାରେ ଏକତ୍ରିତ ହୁଏ । ବେଳେବେଳେ ଏଗୁଡ଼ିକ ଲାଇନ୍ ଦେହରୁ ବାହାରିଯାଇ ଗୋଲାକାର ବିଦ୍ୟୁତ୍ ପେଣ୍ଡୁ ସୃଷ୍ଟି କରନ୍ତି । ଏହି ଗୋଲାକାର ବିଦ୍ୟୁତ୍ ପେଣ୍ଡୁ ବେଳେ ବେଳେ ଖୁବ୍ ବେଗରେ ଗତିକରେ । ଗତି କରୁ କରୁ ନିଜ ଅକ୍ଷ ଚାରିପାଖରେ ଘୂରି ଉଡ଼ନ୍ତାଥାଳିଆର ଦୃଶ୍ୟ ସୃଷ୍ଟି କରିପାରେ । ବିଦ୍ୟୁତ୍ ଲାଇନ୍‌ଠାରେ ଉଡ଼ନ୍ତାଥାଳିଆ କାହିଁକି ଦେଖାଯାଏ, ଏହା ହେଲା ଏ ତତ୍ତ୍ୱର ଏକ କାରଣ ।"

× × × ×

ବକ୍ତୃତା ସାରି ଅଧ୍ୟାପକ ଘରକୁ ଫେରୁଥାନ୍ତି, ମିସ୍ ସେନ୍‌ଙ୍କୁ ସମିତି ଗୃହର ପ୍ରଧାନ ଦୁଆର ପାଖରେ ଠିଆହୋଇଥିବା ଦେଖି ସେ ଚମକି-ପଡ଼ିଲେ । ତାଙ୍କ ପାଟିରୁ ବାହାରିପଡ଼ିଲା, "ଆପଣ ଯେ ହଠାତ୍ ଆଜି ଏଠି, ମିସ୍ ସେନ ?"

"କାହିଁକି ?" ଉଦ୍ଦାମ ଯୌବନର ଉଚ୍ଛୃଙ୍ଖଳ ହସଭଙ୍ଗୀରେ ଚପଳତାଭରି ମୃଦୁ କଟାକ୍ଷପାତ କରି ମିସ୍ ସେନ କହିଲେ, "ସାରା କଲିକତା ନଗରୀ ଯେତେବେଳେ ଏଠିକି ଉଠିଆସିଛି, ମୁଁ ଆଉ ନ ଆସି ରହିପାରିଥାନ୍ତି କେମିତି ମନୋଜବାବୁ ? ଆପଣଙ୍କ ବକ୍ତୃତା ପରା ମୋତେ ଟାଣିଆଣିଛି ଏଠାକୁ । ଯାହାହେଉ, ଆପଣଙ୍କର ପାଣ୍ଡିତ୍ୟପୂର୍ଣ୍ଣ ବକ୍ତୃତା ଶୁଣିସାରିବା-ପରେ ଆପଣଙ୍କ ସହିତ ଯେ ସାକ୍ଷାତ ହୋଇଗଲା, ସେଇ ମୋର ପରମ ସୌଭାଗ୍ୟ ।"

ଏହିଭଳି କଥାବାର୍ତ୍ତା ହେଉ ହେଉ ଅଧ୍ୟାପକ ପଟ୍ଟନାୟକ ଓ ମିସ୍ ସେନ୍ ଗେଟ୍ ପାଖକୁ ଚାଲିଆସିଲେ । ଅଧ୍ୟାପକ ଗେଟ୍ ପାରହୋଇ କିଛିଦୂର ଯାଇ ନିକଟବର୍ତ୍ତୀ ବସ୍ ଷ୍ଟାଣ୍ଡ ପାଖରେ ଠିଆହୋଇଛନ୍ତି କି ନାହିଁ ମିସ୍ ସେନ୍ ଗେଟ୍ ପାଖରେ ଥିବା ତାଙ୍କ ନିଜ ଗାଡ଼ିଟାକୁ ବୁଲାଇଆଣି ଠିକ୍ ଅଧ୍ୟାପକଙ୍କ ପାଖରେ ରଖିଦେଇ ଅନୁରୋଧ କଲେ, "ମୋ ଗାଡ଼ିରେ ଆପଣଙ୍କୁ ଘରେ ପହଞ୍ଚାଇଦେବାର ସୁଯୋଗ କ'ଣ ଦେବେନି ଡକ୍ଟର ପଟ୍ଟନାୟକ ?"

ମିସ୍ ସେନ୍‌ଙ୍କ ଅନୁରୋଧ ଶୁଣି ଅଧ୍ୟାପକ ଚମକି ପଡ଼ି କହିଲେ, "ଆଁ, ଆପଣଙ୍କ ଗାଡ଼ି ? ନାଇଁ ନାଇଁ, ଆପଣଙ୍କୁ ଏତେ କଷ୍ଟ ଦେବା କ'ଣ ମୋ ପକ୍ଷରେ ଶୋଭନୀୟ ହେବ ମିସ୍ ସେନ୍ ? ମୁଁ ବସ୍‌ରେ ବେଶ୍ ସୁବିଧାରେ ଯାଇପାରିବି । ଆପଣଙ୍କର ଏହି ଅସୀମ ଦୟା ପ୍ରତି ଅଶେଷ ଧନ୍ୟବାଦ୍ !"

ମିସ୍ ସେନ୍ ଗାଡ଼ିର ଦରଜା ଖୋଲିଦେଇ କହିଲେ, "ମୋ ରାଣ ମନୋଜବାବୁ, ଆପଣଙ୍କୁ ମୋ ଅନୁରୋଧ ରକ୍ଷା କରିବାକୁ ପଡ଼ିବ । ଆପଣ ଦୟାକରି ଆସନ୍ତୁ ଗାଡ଼ି ଭିତରକୁ । ମୁଁ ଆଜି ଆପଣଙ୍କର କୌଣସି କୈଫିୟତ୍ ଶୁଣିବାକୁ ପ୍ରସ୍ତୁତ ନୁହେଁ ।"

ମିସ୍ ସେନ୍‌ଙ୍କର ଏତାଦୃଶ ଜିଦ୍ ଦେଖି ଅଧ୍ୟାପକ ବଡ଼ ଅନିଚ୍ଛୁକ ହୋଇ ଗାଡ଼ିରେ ବସିଲେ । ମିସ୍ ସେନ୍ ଅପାର ସାରକୁଲାର ରୋଡ଼ରେ ଗାଡ଼ିକୁ ଖୁବ୍ ଜୋର୍‌ରେ ଛୁଡ଼ିଦେଲେ ବାଲିଗଞ୍ଜ ଅଭିମୁଖେ ।

ବାଟରେ ଯାଉଁ ଯାଉଁ ମିସ୍ ସେନ୍ ଅଧ୍ୟାପକଙ୍କ ଆଡ଼କୁ ଅନାଇ ତାଙ୍କର ମାଦକଭରା ଢଳ ଢଳ ଆଖି ଦୁଇଟିକୁ ନଚାଇ ପଚାରିଲେ, "ଆମ କଲେଜ କଥା କ'ଣ କଲେ ମନୋଜବାବୁ ? ସେଦିନ କଲେଜର ଦୁଇ ଜଣ ଛାତ୍ରୀଙ୍କୁ ଏଣୁତେଣୁ କହି ସିନା ବିଦା କରିଦେଲେ; କିନ୍ତୁ ଆଜି ମୁଁ ଆପଣଙ୍କୁ ଛାଡ଼ିବିନି । ଆପଣଙ୍କୁ ନିଶ୍ଚୟ ହଁ ଭରିବାକୁ ପଡ଼ିବ ମୋ କଥାରେ ।"

"ମୋ ବକ୍ତୃତା ପାଇଁ ଆପଣଙ୍କର ଏତେ ଜିଦ୍ କାହିଁକି ମିସ୍ ସେନ ? ସ୍ପୁଟ୍‌ନିକ ଉପରେ ବକ୍ତୃତା ଦେବା ପାଇଁ ସାରା କଲିକତା ସହରରେ କ'ଣ ଆଉ କେହି ନାହାନ୍ତି ?"

ଅଧ୍ୟାପକଙ୍କ କଥାରେ ମିସ୍ ସେନ ଈଷତ୍ ହସିଲେ । ଗାଡ଼ିର ଗତିକୁ ଟିକିଏ ମନ୍ଥର କରିଦେଇ କହିଲେ, "କଲିକତାରେ ଆପଣଙ୍କଠାରୁ ଏ ବିଷୟରେ ଅଧିକ ଉପଯୁକ୍ତ ଲୋକ ଥିଲେ ମୁଁ ଆପଣଙ୍କୁ କଷ୍ଟ ଦେଇ ନ ଥାନ୍ତି ମନୋଜବାବୁ ! ସତ କହିଲେ, ଆପଣ ସେଦିନ ପ୍ରକୃତରେ ଅସୁବିଧାବଶତଃ ଝିଅ ଦୁହିଁଙ୍କୁ ଫେରାଇଦେଲେ, ନା ମୋ ଉପରେ ପୂର୍ବ ରାଗ ଶୁଝାଇବାକୁ ଏପରି ନାହିଁ କରିଦେଲେ ? ବାସ୍ତବରେ ଆପଣ ମୋତେ ଏଭଳି ଭାବରେ ଭୁଲ ବୁଝିବେ ବୋଲି ମୁଁ କେବେ ଆଶା କରି ନଥିଲି ମନୋଜବାବୁ !"

"ଅତୀତର ସେଇ ପୁରୁଣା କଥାଗୁଡ଼ାକ ଉଠାଇ ଆଜ ଲାଭ କଅଣ ମିସ୍ ସେନ୍! ଆଜ ଆମେ ଘଟଣାଚକ୍ରରେ ପଡ଼ି ପରସ୍ପରଠାରୁ ଯଥେଷ୍ଟ ଦୂରେଇ ଯାଇଛେ । ଆଜ ପଛ କଥା ଭାବି ଲାଭ କ'ଣ ? ଆପଣଙ୍କୁ ମୁଁ କେବେ ଭୁଲ ବୁଝିବାକୁ ଚେଷ୍ଟା କରିନି ମିସ୍ ସେନ୍ । ଅବସ୍ଥାଚକ୍ରରେ ପଡ଼ି ଆପଣ ଯା' କଲେ, ସେଥିପାଇଁ ଆପଣଙ୍କ ଉପରେ ଅଯଥା ଦୋଷାରୋପ କରି ଲାଭ କଅଣ ?

ଏତକ କହିଲାବେଳେ ଅଧ୍ୟାପକ କିଛିଟା ଅନ୍ୟମନସ୍କ ହେଲା ଭଳି ଜଣାପଡ଼ୁଥାନ୍ତି । ବିଗତର ଶତ ଶତ ଘଟଣା ତାଙ୍କ ଆଖି ଆଗରେ ରୁପେଲି ପରଦାର ଝିଲି ମିଲି ଚଳଚ୍ଚିତ୍ର ଭଳି ଭାସି ଉଠି ତାଙ୍କର ଚିନ୍ତାର ସ୍ରୋତକୁ ଚହଲାଇ ଦେଇ ପୁଣି ପର ମୁହୂର୍ତ୍ତରେ ମିଳାଇ ଯାଉଥାଏ ।

ବେଶିଦିନ ତଳର କଥା ନୁହେଁ, ୧୯୫୨ ମସିହା ଘଟଣା । ମିସ୍ ସେନ୍ ବଙ୍ଗୀୟ ସରକାରଙ୍କଠାରୁ ବୃତ୍ତିପାଇ ଲଣ୍ଡନ ଯାଇଥାନ୍ତି ଉଚ୍ଚଶିକ୍ଷା ପାଇଁ । ସେ ଲଣ୍ଡନରେ ପହଞ୍ଚି ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଇଂରାଜୀରେ ଏମ୍. ଏ. ପଢ଼ିଲେ । ସେତେବେଳକୁ ଅଧ୍ୟାପକ ପଟ୍ଟନାୟକ ଲଣ୍ଡନର ଇମ୍ପେରିଆଲ କଲେଜରୁ ସମ୍ମାନର ସହିତ ଡକ୍ଟରେଟ୍ ଉପାଧି ହାସଲ କରି ସେହି ଅନୁଷ୍ଠାନରେ ଡକ୍ଟରେଟ୍‌ପର ଗବେଷଣାରେ ନିବିଷ୍ଟ ଥାନ୍ତି । ମିସ୍ ସେନ୍ ଖାଲି ସୁନ୍ଦରୀ ନୁହନ୍ତି, ବେଶ୍ ଆଧୁନିକା, ମେଳାପୀ ଓ ଚିତ୍ତାକର୍ଷକ ବାକ୍ୟମୟୀ । ସେ କଥା-ବାର୍ତ୍ତାରେ ଏତେ ପଟୁ, ଯେ ଥରେ ତାଙ୍କ ସହିତ କଥାବାର୍ତ୍ତା କରିଛି, ସେ ତାକୁ ଅଳ୍ପ କେଇ ମିନିଟ୍ ମଧ୍ୟରେ ନିଜର କରିନେଇ ପାରିଛନ୍ତି । ଏକେ ତ ରୂପସୀ, ତେଣେ ବୟସର ତାରୁଣ୍ୟ ବେଶ୍ ପ୍ରସ୍ଫୁଟିତ, ତେଣୁ ସେ କ୍ଷେତ୍ରରେ ବିଭିନ୍ନ ଭାରତୀୟ ଯୁବକଙ୍କୁ ନିଜଆଡ଼କୁ ଆକୃଷ୍ଟ କରିବା ବେଶି କିଛି କଷ୍ଟକର ହେଲାନି ତାଙ୍କ ପକ୍ଷରେ । ମିସ୍ ସେନ୍ ପାଠପଢ଼ା ପ୍ରତି ଯେତେ ସଜାଗ ନଥିଲେ, ସେତେ ବେଶି ସଜାଗ ଥିଲେ ବ୍ରିଟିଶ ଆଦବ୍‌କାଏଦା, ଫେସନ ଆଦି ଶିଖିବା ଓ ଇଂରେଜୀ ଜୀବନ ଉପଭୋଗ କରିବାଆଡ଼କୁ । ଲଣ୍ଡନ ସହରର ନାମଜାଦା ନାଇଟ୍ କ୍ଲବ୍‌କୁ ବଏ ଫ୍ରେଣ୍ଡମାନଙ୍କ ସହିତ ଯିବା, ଥରକୁ ଥର ରୂପସଜ୍ଜା ବଦଳାଇବା ତାଙ୍କର ଏକ ଅଭ୍ୟାସଗତ ଗୁଣ ହୋଇ ପଡ଼ିଲା । ଭାରତୀୟ ଛାତ୍ରମାନଙ୍କ ଭିତରେ ସେତେବେଳେ ଡକ୍ଟର ପଟ୍ଟନାୟକଙ୍କର ବିଶେଷ ସୁଖ୍ୟାତି ଥିବାରୁ ସେ ମଧ୍ୟ ତାଙ୍କୁ ଆକୃଷ୍ଟ କରିବାକୁ ଛାଡ଼ି ନଥିଲେ । ଡକ୍ଟର

ପଟ୍ଟନାୟକ ନିଜ ମେଧା ବଳରେ ପୃଥିବୀର ଏକ ଶ୍ରେଷ୍ଠ ବୈଜ୍ଞାନିକ ହେବାର ସମ୍ଭାବନା ଥିବାରୁ ମିସ୍ ସେନ୍ ତାଙ୍କୁ ଜୀବନର ସଙ୍ଗୀଭାବରେ ବାଛିବାକୁ ଛାଡ଼ି ନ ଥିଲେ । ଡକ୍ଟର ପଟ୍ଟନାୟକଙ୍କୁ ଜୀବନର ଭବିଷ୍ୟତ ସଙ୍ଗୀଭାବରେ କଳ୍ପନା କରି ନିଜର ସୁନେଲି ଭବିଷ୍ୟତ ନେଇ ସେ କେତେ କ'ଣ ଯେ କଳ୍ପନାଜଳ୍ପନା କରିଯାଇଥିଲେ, ତା'ର କଳନା ନାହିଁ । କିନ୍ତୁ ମିସ୍ ସେନ୍‌ଙ୍କ ରୂପରେ ଡକ୍ଟର ପଟ୍ଟନାୟକ ମନ୍ତ୍ରମୁଗ୍ଧ ହୋଇ ଯାଇଥିଲେହେଁ ମିସ୍ ସେନ୍‌ଙ୍କ ଜୀବନଯାପନ ପ୍ରଣାଳୀକୁ ପସନ୍ଦ କରିପାରୁ ନ ଥିଲେ । ସନ୍ଧ୍ୟାରେ ଭିନ୍ନ ଭିନ୍ନ ନାଇଟ୍ କ୍ଲବକୁ ଡକ୍ଟର ପଟ୍ଟନାୟକଙ୍କୁ ନେବାକୁ ମିସ୍ ସେନ୍ କେତେ ଯେ ଚେଷ୍ଟା କରିଥିଲେ ତାର ଇୟତ୍ତା ନାହିଁ; କିନ୍ତୁ ଯେତେବେଳେ ଦେଖିଲେ ଯେ ଡକ୍ଟର ପଟ୍ଟନାୟକ ସେଭଳି ଜୀବନଯାପନ ପାଇଁ ଆଗ୍ରହୀ ନୁହନ୍ତି, ସେତେବେଳେ ତାଙ୍କ ଉପରୁ ତାଙ୍କ ମନ କିଞ୍ଚିତ୍ ଦୂରେଇ ଆସିଥିଲା । ତଥାପି ସେ ଡକ୍ଟର ପଟ୍ଟନାୟକଙ୍କୁ ତାଙ୍କ ମାନସ-ପଟରୁ ପୁରାପୁରି ଲିଭାଇ ଦେଇ ନ ଥିଲେ । କିନ୍ତୁ ଯେତେବେଳେ ତାଙ୍କଭଳି ଚାକଚକ୍ୟମୟ ନାଇଟ୍ କ୍ଲବ୍ ବିଳାସୀ ଯୁବକ ଇଂଜିନିଅର ଶେର ସିଂହ ଲଣ୍ଡନରେ ଉଚ୍ଚତର ଟ୍ରେନିଂ ପାଇଁ ଯାଇ ପହଞ୍ଚିଲେ, ମିସ୍ ସେନ୍‌ଙ୍କ ଜୀବନରେ ନୂତନ ଅଧ୍ୟାୟ ସୃଷ୍ଟି ହେଲା କହିଲେ ଅତ୍ୟୁକ୍ତି ହେବନି । ସେ ଡକ୍ଟର ପଟ୍ଟନାୟକଙ୍କୁ ପୁରାପୁରି ମନରୁ ବିଦାୟ ଦେଇ ମିଷ୍ଟର ସିଂହଙ୍କ ଚାକଚକ୍ୟ ଓ ଇଂରେଜୀ ଆଦବ୍‌କାଏଦ ରେ ମୁଗ୍ଧ ହୋଇ ତାଙ୍କ ପଛରେ ଗୋଡ଼ାଇଥିଲେ । ମିସ୍ ସେନ୍ ଯେଉଁଭଳି ଜୀବନଯାପନକୁ ଭଲ ପାଉଥିଲେ, ମିଷ୍ଟର ସିଂହ ଠିକ୍ ସେହିଭଳି ଜୀବନ ସହିତ ଓତଃପ୍ରୋତ ଭାବରେ ଜଡ଼ିତ ହୋଇପଡ଼ିଥିଲେ । ତେଣୁ ଯୋଜ୍ୟମ ଯୋଜ୍ୟେନ ଯୋଜୟେତ୍ ଖାତରେ ରାଜଯୋଟକ ହେଲାଭଳି ଦୁହେଁ ପରସ୍ପରଆଡ଼କୁ ପାଖେଇ ଆସିଥିଲେ । ସୁନ୍ଦରୀ ମିସ୍ ସେନ୍ ମିଷ୍ଟର ସିଂହଙ୍କ ସହିତ କେତେ ନାଇଟ୍ କ୍ଲବରେ କେତେ ଉନ୍ନିଦ୍ର ରଜନୀ ଯେ ବିତାଇଛନ୍ତି, ତାର ଇୟତ୍ତା ନାହିଁ । ହାଇଡ୍ ପାର୍କଠାରୁ ଆରମ୍ଭକରି ସେଣ୍ଟ ଜେମସପାର୍କ, ରିଜେଣ୍ଟ ପାର୍କ ପର୍ଯ୍ୟନ୍ତ କେତେ ପାର୍କର ଲତାକୁଞ୍ଜ ଭିତରେ ବିଭିନ୍ନ ଅଭିସାରିକା ବେଶରେ କେତେ ଯେ ଅଭିନୟ କରିଛନ୍ତି, ତାର କଳନା ନାହିଁ । ରୂପ, ଯୌବନ ଥିଲେ ମଣିଷ ଯେ କେତେ ଉଚ୍ଛୃଙ୍ଖଳ ହୋଇପଡ଼େ,

ଚାହିଁର ନମୁନା ଥିଲେ ମିସ୍ ସେନ୍ ନିଜେ । ମିସ୍ ସେନ୍ ମିଷ୍ଟର ସିଂହଙ୍କଠାରେ ନିଜ ଜୀବନର ସର୍ବସ୍ୱ ଢାଳିଦେଇ ନିଜ ଜୀବନର ସଙ୍ଗୀ ଭାବରେ ବରଣ କରିବାକୁ ଯେତେବେଳେ ଯାଆନ୍ତି ଭାରତ ସରକାରଙ୍କ ଚବିଶ ଘଣ୍ଟିଆ ନୋଟିସ ପାଇଁ ମିଷ୍ଟର ସିଂହ ଲଣ୍ଡନ ଛାଡ଼ି ଭାରତକୁ ପ୍ରତ୍ୟାବର୍ତ୍ତନ କଲେ । ଏହି ଘଟଣାରେ ମିସ୍ ସେନ୍ ସାମୟିକ ମର୍ମାହତ ହେଲେ ସତ; କିନ୍ତୁ ପୁଣି ନୂତନ ବନ୍ଧୁ ସଂଗ୍ରହ କରିବା ଦିଗରେ ଆଗେଇ ଚାଲିଲେ ।"

ମିସ୍ ସେନ୍‌ଙ୍କ ଗାଡ଼ି ଅଧ୍ୟାପକଙ୍କ ଗେଟ୍ ପାଖରେ ପହଞ୍ଚିଲାବେଳକୁ ଅମିତା ଦେବୀ ବାରଣ୍ଡାରେ ବସି ମେଗାଜିନ୍ ପଢ଼ୁଥିଲେ । ଗୋଟିଏ ଅତ୍ୟାଧୁନିକ ମଟରଗାଡ଼ି ତାଙ୍କ ଗେଟ୍ ପାଖରେ ଠିଆହେବା ଦେଖି ସେ ଆଶ୍ଚର୍ଯ୍ୟ ହୋଇ ଗେଟ୍ ପାଖକୁ ଦୌଡ଼ିଆସିଲେ । ଅଧ୍ୟାପକଙ୍କୁ ଏକ ଅତି ଆଧୁନିକାଙ୍କ ଗାଡ଼ିରେ ବସିଥିବା ଦେଖି ସେ ଶଙ୍କିତ ହୋଇ ପଛକୁ ସାମାନ୍ୟ ହଟିଗଲେ । ଭଦ୍ରମହିଳାଙ୍କ ବେଶଭୂଷା କେତେକାଂଶରେ ବିଦେଶୀ ଫେସନରେ ସଜ୍ଜିତ ହେଲାଭଳି ଦିଶୁଥାଏ । ମସ୍ତକର ପଶ୍ଚାଦ୍‌ଭାଗରେ ଗୁଚ୍ଛୀକୃତ ବେଣୀ ବନ୍ଧନ-ବିହୀନ କେଶକଳାପ, ରକ୍ତ-ରାଗରଞ୍ଜିତ ଅଧରରେ ଦରବିକଶିତ ହାସ୍ୟ-ରେଖା, ଅର୍ଦ୍ଧମୁକ୍ତ ବକ୍ଷରେ ଜଳଦ-କୃଷ୍ଣରଞ୍ଜିତ ବହୁମୂଲ୍ୟ ପ୍ରସ୍ତରର ଏକ ମାଳା ଓ ସର୍ବୋପରି ଭୂଷଣବିହୀନ ବାମହସ୍ତରେ ଦୋଳାୟମାନ ଭେନିଟି ବ୍ୟାଗ୍ ଅମିତା ଦେବୀଙ୍କୁ ଏକରକମ ସ୍ତମ୍ଭିତ କରିଦେଲା । ଗାଡ଼ି ନିକଟକୁ ଯିବାକୁ ତାଙ୍କର ସାହସ ହେଲାନି । ବିଲାତି ଫେସନରେ ସୁସଜ୍ଜିତା ଏହି ଭଦ୍ରମହିଳାଟି କିଏ, ଭାବୁ ଭାବୁ ସେ ଅନ୍ୟମନସ୍କ ହୋଇପଡ଼ିଲେ । "ଅଧ୍ୟାପକ କ'ଣ ତାହେଲେ······?" ଆଉ ଭାବିପାରିଲେନି ଅମିତା ଦେବୀ । ତାଙ୍କ ମୁହଁ ସନ୍ଦେହର ଏକ ଗାଢ଼ ଛାୟାରେ ଛାଇ ହୋଇଗଲା ଠିକ୍ ପ୍ରାଚୀ ଦିଗ୍‌ବଳୟକୁ ଜ୍ୟେଷ୍ଠମାସର ଜଳଦକୃଷ୍ଣ ଘୋଡ଼ାଇଲା ଭଳି ।

ଅଧ୍ୟାପକ ମିସ୍ ସେନ୍‌ଙ୍କୁ ଅମିତା ଦେବୀଙ୍କ ସହିତ ପରିଚିତ କରାଇ-ଦେବାପାଇଁ ଗାଡ଼ିରୁ ଓହ୍ଲାଇପଡ଼ି ସ୍ତ୍ରୀଙ୍କ ଆଡ଼କୁ ଲକ୍ଷ୍ୟକରି ମିସ୍ ସେନ୍‌ଙ୍କୁ କହିଲେ—

"ଏ ହେଉଛନ୍ତି ଶ୍ରୀମତୀ ଅମିତା ଦେବୀ, ମୋର ସହଧର୍ମିଣୀ ।" ପୁଣି ପରମୁହୂର୍ତ୍ତରେ ସ୍ତ୍ରୀଙ୍କ ଆଡ଼କୁ ଅନାଇ ମିସ୍ ସେନ୍‌ଙ୍କୁ ଲକ୍ଷ୍ୟକରି କହିଲେ, "ଏ ହେଉଛନ୍ତି ମିସ୍ ଜୟୁକ୍ତା ସେନ୍······"

"ବେଥୁନ୍ କଲେଜର ପ୍ରିନ୍‌ସପାଲ୍ ।" ଅଧ୍ୟାପକ କହିବା ପୂର୍ବରୁ ଅମିତା ଦେବୀ କହିପକାଇଲେ । ମୁଖରେ ଏକ କୃତ୍ରିମ ହସ ଫୁଟାଇ କହିଲେ, "ମୁଁ ଆପଣଙ୍କୁ ଭେଟି ଖୁବ୍ ଖୁସିହେଲି ଭଉଣି !"

"ଆପଣ ମୋତେ କେମିତି ଚିହ୍ନିଲେ ଅମିତା ଦେବୀ ?" ସାମାନ୍ୟ ଚିନ୍ତିତା ହୋଇ ପଚାରିଲେ ମିସ୍ ସେନ୍ । ମନରେ ତାଙ୍କର ଭୟ ହେଲା, ଅମିତା ଦେବୀ କ'ଣ ଅଧ୍ୟାପକ ପଟ୍ଟନାୟକଙ୍କ ସହିତ ତାଙ୍କ ଘନିଷ୍ଠ ସଂପର୍କ ସମ୍ବନ୍ଧରେ କିଛି ଖବର ପାଇଛନ୍ତି ନା କଅଣ ?

ଅମିତା ଦେବୀ ମିସ୍ ସେନ୍‌ଙ୍କ ପ୍ରଶ୍ନରେ ଈଷତ୍ ହସିଲେ, "ଆପଣଙ୍କ ଭଳି ବରିଷ୍ଠ ମହିଳାଙ୍କୁ କିଏ ନ ଚିହ୍ନେ କହିଲେ ? ଆପଣଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ନାହିଁ ବୋଲି ଯେ ମୁଁ ଆପଣଙ୍କୁ ଚିହ୍ନିନି, ଏହା ଆପଣଙ୍କୁ କିଏ କହିଲା ? ସେଦିନ ଆପଣଙ୍କ କଲେଜର ଯେଉଁ ଝିଅ ଦୁଇଟି ମୋତେ ନିମନ୍ତ୍ରଣ କରିବାକୁ ଆସିଥିଲେ, ସେମାନେ ଆଣିଥିବା ଚିଠିରୁ ପରା ମୁଁ ଆପଣଙ୍କୁ ଚିହ୍ନି ପାରିଥିଲି ।"

ମିସ୍ ସେନ୍ ଏଇ କଥା କେଇ ପଦରେ ମନ ଭିତରର ଏକ ବଡ଼ ଆଶଙ୍କାରୁ ମୁକ୍ତ ପାଇଗଲେ । ଗୁହୁଁ ଗୁହୁଁ ଫ କରି ଏକ ଦୀର୍ଘନିଃଶ୍ୱାସ ତାଙ୍କ ଅଜାଣତରେ ଛାତି ଭିତରୁ ବାହାରିଆସିଲା । ମନେ ମନେ ସେ ଭଗବାନଙ୍କୁ ଶତ ଧନ୍ୟବାଦ ଜଣାଇ ଅମିତା ଦେବୀଙ୍କୁ ପଚାରିଲେ, "ଆଁ, ଆପଣ ସେଦିନ ସେଠି ଥିଲେଟି ? ଅଧ୍ୟାପକ ପଟ୍ଟନାୟକଙ୍କୁ ଆମ ତରଫରୁ ଟିକିଏ ବି ମନାଇ-ପାରିଲେନି ଆପଣ ? ଆପଣ ଜଣେ ମହିଳା ହୋଇ ଆମ ମହିଳା କଲେଜ ପ୍ରତି ଟିକିଏ ବି ସହାନୁଭୂତି ଦେଖାଇପାରିଲେ ନାହିଁ ସେଦିନ ? ମୋତେ ଶେଷରେ ବାଧ୍ୟହୋଇ ଆସିବାକୁ ପଡ଼ିଲା ?"

"ଏଥର ସେ ବକ୍ତୃତା ନ ଦେଇ ଯିବେ କୁଆଡ଼େ ? ତାଙ୍କ ନିଜ ପ୍ରତିଜ୍ଞା ସେ ତ ନିଜେ ଭାଙ୍ଗି ସାରିଲେଣି । ସେଥିପାଇଁ ସେ ବଙ୍ଗୀୟ ବିଜ୍ଞାନ ସମିତିରେ ବକ୍ତୃତା ଦେବାପର୍ଯ୍ୟନ୍ତ ମୁଁ ପରା ଚୁପ୍ ହୋଇ ଅପେକ୍ଷା କରିଥିଲି ।

ଅମିତା ଦେବୀ ଓ ମିସ୍ ସେନ ଯେତେବେଳେ ବାରଣ୍ଡାରେ ଏହିଭଳି କଥାବାର୍ତ୍ତାରେ ବ୍ୟସ୍ତ ଥିଲେ, ଅଧ୍ୟାପକ ଜଣେ ଘର ଭିତରକୁ ଯାଇ ପୂଝାରୀଙ୍କୁ ଚା ପାଇଁ ବରାଦ କରୁଥିଲେ । କିଛିକ୍ଷଣ ପରେ ସେ ଘରୁ ବାହାରିଆସି ଦୁଇ ଜଣଙ୍କୁ ବାରଣ୍ଡାରେ ଠିଆହୋଇ କଥାବାର୍ତ୍ତା ହେଉଥିବାର ଦେଖି ବିରକ୍ତିକର ସ୍ୱରରେ ଅମିତା ଦେବୀଙ୍କୁ କହିଲେ, "ତୁମେ ମିସ୍ ସେନ୍‌ଙ୍କୁ ଘର ଭିତରକୁ ନ ଡାକି ସେହି ବାରଣ୍ଡାରେ ଠିଆ ହୋଇ କ'ଣ କଥାବାର୍ତ୍ତା କରୁଛ ମିତା ? ଶିଷ୍ଟାଚାର ପ୍ରତି ଟିକିଏ ନଜର ଦିଅ ।"

ଅଧ୍ୟାପକଙ୍କର ଏଭଳି ଅସ୍ୱାଭାବିକ କଡ଼ା ତାଗିଦରେ ବ୍ୟସ୍ତବ୍ୟସ୍ତ ହୋଇ ଅମିତା ଦେବୀ କହିଲେ, "ବାସ୍ତବିକ, ଆପଣଙ୍କୁ ବାରଣ୍ଡାରେ ଠିଆ କରାଇ କମ ବଡ଼ ଭୁଲ କରିନ ଭଉଣୀ ! ଆଶା, ମୋତେ ମୋର ଏ ତ୍ରୁଟି ପାଇଁ କ୍ଷମା କରିବେ । ଏଥର ଚାଲନ୍ତୁ ଭିତରକୁ ।"

"ହଁ···ହୁଁ ; ଯିବିନି ।" ଅଧ୍ୟାପକଙ୍କ ଆଡ଼କୁ ଅନାଇ ନିଜ ଆକର୍ଷଣୀୟ ମୃଗାକ୍ଷି ଦୁଇଟିକୁ ନଚାଇ କହିଲେ, "ମୋ ଅନୁରୋଧର ଭାଗ୍ୟ କ'ଣ ହେଲା ନ ଜାଣିଲା ପର୍ଯ୍ୟନ୍ତ ମୁଁ କ'ଣ ସହଜରେ ଆପଣଙ୍କ ଘର ଭିତରକୁ ପଶୁଛି ? ଆପଣ ଆମ କଲେଜରେ ବକ୍ତୃତା ଦେବାକୁ ରାଜି ନ ହେଲା ପର୍ଯ୍ୟନ୍ତ ମୁଁ ଆପଣଙ୍କ ଦୁଆର ଆଗରେ ଅନଶନ କରିବାକୁ ପଛାଇବିନି ଆଜି । ଆପଣଙ୍କ ଘର ଭିତରକୁ ଯିବା ତ ଦୂରର କଥା ।"

"ଆପଣ ଏଇ ସାମାନ୍ୟ କଥା ପାଇଁ ଘର ଭିତରକୁ ଆସିବେନି ? ସେ ଏଥର ନ ଯିବେ କାହିଁକି ଯେ ? ଥରେ ତ ପ୍ରତିଜ୍ଞା ଭାଙ୍ଗି ସାରିଲେଣି ।" ଏତିକି କହି ମିସ୍ ସେନଙ୍କୁ ଭିଡ଼ି ନେଇଗଲେ ଅମିତା ଦେବୀ ଘର ଭିତରକୁ ।

---



( ତିନି )



ଶ୍ରାବଣ ମାସର ବର୍ଷାଦିନଆ ସକାଳ । ଗତ ଦୁଇଦିନ ଧରି ମୁଷଳ ଧାରରେ ମେଘ ବର୍ଷିଯାଉଛି । ଭୁହାକୁ ଭୁହା ବର୍ଷାରେ କଲିକତାରେ ସାଧାରଣ ନାଗରିକ ଜୀବନ ବ୍ୟସ୍ତବ୍ୟସ୍ତ ହୋଇପଡ଼ିଥାଏ । ଅଧ୍ୟାପକ ଖିଆ-ପିଆ ସାରି କଲେଜକୁ ବାହାରୁଥାନ୍ତି, ଅମିତା ଦେବୀ ପଶିଆସି କହିଲେ, "ହଁ ବାହାରୁଛ ତ ସତ, କିନ୍ତୁ ଯିବ କେମିତି ଭାବିଛଟି ?"

"ଆରେ ଠିକ୍ ତ ? ମୋ ଛତାଟା ଆଣିଲ ? ବସ୍‌ଷ୍ଟାଣ୍ଡ ପର୍ଯ୍ୟନ୍ତ ଯାଇପାରିଲେ—"

"କିନ୍ତୁ ବସ୍‌ରେ ଯାଇ ପାରିଲେ ତ ହୁଏ ? ବର୍ତ୍ତମାନ ଯେଉଁ ଭିଡ଼ ହୋଇଥିବ; ଭାବିପାରୁଛ ତ ?"

"ତା' ହେଲେ, କ'ଣ କରାଯିବ ବର୍ତ୍ତମାନ ? ଛକ ପାଖରେ ଟେକ୍‌ସିଟାଏ ତ ମିଳିବ ନିଶ୍ଚୟ ? ହେଉ, ଆମ ଟୋକାଟାକୁ ପଠାଇଲ, ସେ ଟାକ୍‌ସିଟାଏ ଡାକି ଆଣୁ ।"

"ମୁଁ ଆଉ ସେତିକି ଚେଷ୍ଟା ନ କରି କ'ଣ ବସିଛି ? ସେ ପରା ଛକ ପାଖକୁ ଯାଇ ଦୁଇ ଥର ବୁଲି ଆସିଲାଣି । ଟେକ୍‌ସିର ଦେଖାସାକ୍ଷାତ ନାହିଁ । ବର୍ତ୍ତମାନ ଟେକ୍‌ସି କ'ଣ ଏଠି ମିଳିବ ? ହେଉ, ହଇରାଣ ହୁଅ । ମୁଁ କେତେଥର ତୁମକୁ କହି ସାରିଲିଣି, ମଟରଗାଡ଼ିଟାଏ କିଣିବା ପାଇଁ । କାର୍‌ଟିଏ କିଣିଥିଲେ କ'ଣ ଏତେ ହଇରାଣ ହେବାକୁ ପଡ଼ିଥାନ୍ତା ଆଜି ? କାର୍‌ଟାଏ କିଣିବା କଥା କହିଲେ ଖାଲି ଆଦର୍ଶ ଆଉ ବକ୍ତୃତା ! ଦୁନିଆରେ ଶହ ଶହ ଲୋକ କାର୍ କିଣୁଛନ୍ତି, ଆମେ କିଣିଲେ କ୍ଷତି ହୋଇଗଲା କେଉଁଠି ?"

"କିନ୍ତୁ କିଣିବାକୁ ତୁମର ଏତେ ଝୁଙ୍କ କାହିଁକି ମିତା ? ଦୁନିଆରେ ଲୋକେ ଯେତେବେଳେ ଆଭିଜାତ୍ୟକୁ ଏକ ଘୃଣା ଓ ହୀନ ଦୃଷ୍ଟିରେ ଦେଖୁଛନ୍ତି, ତୁମେ ସେତେବେଳେ ଆଭିଜାତ୍ୟ କୋଳରେ ମୁଣ୍ଡ ଗୁଞ୍ଜିବାକୁ ଏତେ ଲାଳାୟିତ କାହିଁକି ? ମନୁଷ୍ୟର ଆଦର୍ଶ ନୁହେଁ ଆଭିଜାତ୍ୟ, ଆଭିଜାତ୍ୟର ଧ୍ୱଂସ ବରଂ ମଣିଷର ଆଦର୍ଶ ହେବା ଉଚିତ । ଆଜି ଯିବା ଟିକିଏ ଅସୁବିଧା ହୋଇଗଲା, ନ ହେଲେ ବିନା କାର୍‌ରେ ଆମର ସଂସାର ତ ବେଶ୍ ଚାଲି ଯାଉଥିଲା । କାର୍‌ଟାଏ କିଣି ନିଜକୁ ଜନସାଧାରଣଙ୍କଠାରୁ ପୃଥକ୍ କରି ରଖିବାର ଅପଚେଷ୍ଟାରେ ଲାଭ କିଣ ମିଳିବ ? ତୁମେ ସବୁବେଳେ ମନେରଖିଥିବ ମିତା, ଯେଉଁମାନେ କାରର ଆବଶ୍ୟକତା ନେଇ ସବୁବେଳେ ନାନା ଯୁକ୍ତି ବାଢ଼ିବାକୁ ତିଆରି, ସେମାନଙ୍କ ମନ ଭିତରେ ପ୍ରଚ୍ଛନ୍ନ ଭାବରେ ଖେଳୁଥାଏ ଏକ ଦୁରଭିସନ୍ଧି । ସେ ଦୁରଭିସନ୍ଧି ପୁଣି କାହା ବିରୁଦ୍ଧରେ ଜାଣ ? ମଣିଷ-ସମାଜର କାର୍ ହୀନ ଜନସାଧାରଣଙ୍କ ବିରୁଦ୍ଧରେ । ସେମାନଙ୍କ ମନରେ ସର୍ବସାଧାରଣଙ୍କ ପ୍ରତି ଜାତ ହୋଇଯାଇଥାଏ ଏକ ଘୃଣ୍ୟଭାବ । ସେମାନେ ସର୍ବଦା ଦେଖାଇଦେବାକୁ ଚାହାନ୍ତି ଯେ ଯେହେତୁ ସେମାନଙ୍କର କାର୍

ଅଛି, ସେମାନେ ସାଧାରଣଙ୍କଠାରୁ ପୃଥକ୍, ସେମାନଙ୍କ ସ୍ଥାନ ସର୍ବସାଧାରଣଙ୍କଠାରୁ ଯଥେଷ୍ଟ ଉଚ୍ଚରେ । ଜନସାଧାରଣ ସେମାନଙ୍କୁ ସମ୍ମାନ ଦେଖାଇବା ଉଚିତ ଆଦି ବହୁ କଥା । ସେମାନଙ୍କର ଏହିଭଳି ମନୋଭାବକୁ ବିଶ୍ଳେଷଣ କଲେ ତୁମେ ଜାଣିପାରିବ ଯେ ଆମଭଳି ଦେଶରେ ସେହିମାନେ ହେଉଛନ୍ତି ସାଧାରଣ ଜନତାର ପ୍ରଥମ ଶତ୍ରୁ । କାରଣ ଦରକାର ପଡ଼ିଲେ ସେହି ମୁଷ୍ଟିମେୟ ଲୋକ ଜନତା ବିରୁଦ୍ଧରେ ଠିଆ ହେବାକୁ ପଶ୍ଚାତ୍ପଦ ହେବେନି । ମୁଁ ଯାହା ସବୁ କହିଲି ତାହା ସବୁ କ୍ଷେତ୍ରରେ ପ୍ରଯୁଜ୍ୟ ନ ହେଲେ ମଧ୍ୟ ବହୁ କ୍ଷେତ୍ରରେ ପ୍ରଯୁଜ୍ୟ । ମଟର ଚଳାଇ ମଟରର ଧୂଳିରେ ଯେଉଁମାନେ ବାଟୋଇମାନଙ୍କୁ ପୋତି ପକାଇବାରେ ବା ବର୍ଷାଦିନ ରାସ୍ତାର ମଇଳା ଜଳରେ ବାଟୋଇମାନଙ୍କୁ ଗାଧୋଇଦେବାରେ ଆନନ୍ଦ ପାଆନ୍ତି, ସେମାନଙ୍କୁ ତୁମେ ନିଶ୍ଚିନ୍ତରେ ସେହି ଦଳରେ ନେଇପାର । ତେଣୁ ଏଭଳି ପରିସ୍ଥିତିରେ ଆମେ କାର୍ କିଣି କାର୍‌ହୀନ ଜନସାଧାରଣଙ୍କଠାରୁ ଦୂରେଇଯିବାକୁ ଚେଷ୍ଟା କରିବା କାହିଁକି କହିଲ ? ବରଂ ସେହି ଅର୍ଥକୁ କୌଣସି ପବିତ୍ର ଅନୁଷ୍ଠାନକୁ ଦେଇପାରିଲେ ତେର୍ ମଙ୍ଗଳ ହେବ ।"

"କିନ୍ତୁ ମୁଁ ତୁମ ସହିତ ମୋଟେ ଏକମତ ନୁହେଁ ।" ଅମିତା ଦେବୀ କହିଲେ, "ମୋର ବିଶ୍ୱାସ ବୈଜ୍ଞାନିକମାନଙ୍କୁ ମଟର ଆଦି ଯାନବାହନ ଓ ସୁଖମୟ ଜୀବନ ଯାପନର ସୁବିଧା ଦେଲେ ସେମାନଙ୍କ ଗବେଷଣା ଓ ଉନ୍ନତ ଚିନ୍ତାରେ ଅଧିକ ସୁବିଧା ହୁଏ । ତା' ନ ହୋଇଥିଲେ ରୁଷ ଦେଶରେ ବୈଜ୍ଞାନିକମାନଙ୍କୁ ସାଧାରଣଙ୍କଠାରୁ ଅଧିକ ସୁଖମୟ ଜୀବନ ଯାପନ କରିବାକୁ ସୁବିଧା ଦିଆଯାନ୍ତା ନାହିଁ । ତୁମେ ତ ନିଜେ ସେଦିନ ସେ ଦେଶର ବୈଜ୍ଞାନିକଙ୍କ ସୁଖସ୍ୱାଚ୍ଛନ୍ଦ୍ୟ କଥାରେ ଭାସିଯାଉଥିଲ ?

"ସେଇଟି ତୁମର ଭୁଲ ଧାରଣା ମିତା ! ତାଙ୍କ ଦେଶ ଓ ଆମ ଦେଶ ମଧ୍ୟରେ ପାର୍ଥକ୍ୟ ଯଥେଷ୍ଟ ଅଧିକ । ଆମ ଦେଶରେ ବୈଜ୍ଞାନିକର ଉନ୍ନତ ଚିନ୍ତା ଓ ଗବେଷଣାରେ ଆଭିଜାତ୍ୟପୂର୍ଣ୍ଣ ଜୀବନଯାପନ ସୁବିଧା ସୃଷ୍ଟି ନ କରି ବରଂ ନାନା ବିଶୃଙ୍ଖଳା ସୃଷ୍ଟି କରେ, ଯାହାକି ତାଙ୍କ ଦେଶରେ ସମ୍ଭବପର ନୁହେଁ । ତୁମେ ଟିକିଏ ଗମ୍ଭୀର ଭାବରେ ଚିନ୍ତା କରିଥିଲେ ହୁଏତ ଏଇକଥା କହି ନ ଥାନ୍ତ ।"

"ମୁଁ ଖୁବ୍ ଗଭୀର ଭାବରେ ଚିନ୍ତାକରି ଦେଖିଛି ଏହି ବିଷୟଟିକୁ । ତୁମେ କେବଳ ଏକ ଶୁଷ୍କ ଆଦର୍ଶର ଦୋହାଇ ଦେଇ ଜୀବନର ସୁଖସ୍ୱାଚ୍ଛନ୍ଦ୍ୟକୁ ଯେପରି ଭାବରେ ଜଳାଞ୍ଜଳି ଦେବାକୁ ବସିଛ, ମୁଁ ସେଥିରେ କିନ୍ତୁ ଏକମତ ନୁହେଁ ।"

"ମୋ କଥାଟିକୁ ପୁଣି ଥରେ ଆଲୋଚନା କର ମିତା !

"ତୁମ କଥାକୁ ମୁଁ ବହୁବାର ଆଲୋଚନା କରି ସାରିଲିଣି, ଆଉ ଆଲୋଚନା କରିବା ଦରକାର ନାହିଁ । ତୁମେ କଲେଜରୁ ଫେରିଲା ବେଳକୁ ମୁଁ କାର୍‌ଟାଏ ନୂଆ ହେଉ ବା ପୁରୁଣା ହେଉ କିଣିଆଣି ସାରିଥିବି । ତୁମ ଅନୁମତି ଏତିକିବେଳୁ ନେଇନେଉଛି ।"

"ଶିକ୍ଷକଙ୍କ ଘରେ କାର୍ ଶୋଭା ପାଏନି ମିତା ! ବିଧାତାଙ୍କ ସୃଷ୍ଟିରେ ସେଗୁଡ଼ାକ ପରା ବଡ଼ ଲୋକଙ୍କ ପ୍ରାସାଦକୁ ମଣ୍ଡିତ କରିବା କଥା ! ସରଳ ଜୀବନ ଯାପନ ଓ ଉଚ୍ଚ ଚିନ୍ତା ଯେଉଁମାନଙ୍କ ଆଦର୍ଶ, ତୁମେ ସେମାନଙ୍କ ଘରେ କାର୍‌ର ପ୍ରଚଳନ କରାଇ ସେହି ସ୍ୱର୍ଗୀୟ ଆଦର୍ଶକୁ ହତ୍ୟା କରିବାକୁ ଚେଷ୍ଟା କରନା । ଭଲଭାବରେ ଚିନ୍ତା ନ କରି ଏ ବାଟରେ ନ ଆଗେଇବାକୁ ମୋର ଅନୁରୋଧ । କିଏ ଜାଣେ ଏଇ ସାମାନ୍ୟ କାର୍‌ଟାଏ ତୁମ ଓ ମୋ ମଧ୍ୟରେ ଏକ ପ୍ରାଚୀର ଭାବରେ ଠିଆ ନ ହେବ ?"

× × × ×

ତୃତୀୟ ବାର୍ଷିକ ବିଜ୍ଞାନ ଶ୍ରେଣୀ ଭିତରକୁ ପଶିଗଲା ବେଳକୁ ପିଲାମାନେ ଅଧ୍ୟାପକଙ୍କୁ ଦେଖି ଫୁସ୍‌ଫାସ୍ ହେବାକୁ ଲାଗିଲେ, ସତେ ଯେପରି ସେମାନଙ୍କ ଭିତରେ ପୂର୍ବରୁ କିଛି ଗୋଟାଏ ବଡ଼ ଧରଣର ଆଲୋଚନା ଚାଲିଛି । ପିଲାମାନଙ୍କର ଏଭଳି ଅସ୍ୱାଭାବିକ ବ୍ୟବହାର ଡକ୍ଟର ପଟ୍ଟନାୟକଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ସେମାନଙ୍କର କ'ଣ ହୋଇଛି ଭାବି ସେ ବିସ୍ମିତ ହେବାକୁ ଲାଗିଲେ । ଅଧ୍ୟାପକ ପିଲାମାନଙ୍କର ହାଜରା ନେବେ କଅଣ, ସେମାନଙ୍କ ଭିତରେ କି ଗୁପ୍ତ ଆଲୋଚନା ଚାଲିଛି ଜାଣିବା ପାଇଁ ଉତ୍ସୁକ ହୋଇ ସେମାନଙ୍କ ଆଡ଼କୁ ଅନାଇ ରହିଲେ । ପଚାରିଲା ବେଳକୁ ସମସ୍ତେ ନୀରବ । ଉତ୍ତର ଦେବାକୁ ସାହସ କରୁଛି ବା କିଏ ?

କିଛିକ୍ଷଣ ପରେ ଜଣେ ଯୁବକ ସାହସ ସଞ୍ଚୟ କରି ଥଙ୍ଗେଇ ଥଙ୍ଗେଇ କହିଲା, "ସାର୍, ଆପଣ ଆଜି ଆମକୁ କିଛି ନ ପଢ଼ାଇ ଯଦି ସ୍ପୁଟ୍ନିକ୍ ଉପରେ କିଛି କହନ୍ତେ, ତେବେ ଆମେ ଖୁବ୍ ଉପକୃତ ହୁଅନ୍ତୁ । ଆପଣଙ୍କ ମୁଖରୁ ସ୍ପୁଟ୍ନିକ୍ ବିଷୟରେ ଶୁଣିବୁ ବୋଲି ବହୁଦିନରୁ ଆଶା ପୋଷଣ କରି ଆସୁଥିଲୁଁ । କିନ୍ତୁ ଆପଣ କେଉଁଠି ବକ୍ତୃତା ଦେବେନି ବୋଲି ପ୍ରତିଜ୍ଞାବଦ୍ଧ ହୋଇଥିବାରୁ ଆମେ ଆପଣଙ୍କୁ ଅନୁରୋଧ କରିବାକୁ ସାହସ କରୁ ନ ଥିଲୁଁ । କିନ୍ତୁ···ଆପଣ···ଯେତେବେଳେ ସେହି ପ୍ରତିଜ୍ଞା ଭାଙ୍ଗି ଆଜି···ବେଥିନ କଲେଜରେ ବକ୍ତୃତା ଦେବାକୁ ଯାଉଛନ୍ତି, ଆମକୁ ଆଉ ନିରାଶ କରିବେ କାହିଁକି ? ଅନ୍ୟମାନେ ଆପଣଙ୍କ ମୁଖରୁ ସ୍ପୁଟ୍ନିକ୍ ଉପରେ କିଛି ଶୁଣିବା ପୂର୍ବରୁ ଆମକୁ ସେହି ସୌଭାଗ୍ୟଲାଭରୁ ବଞ୍ଚିତ କରନ୍ତୁନି, ସାର୍ ।"

"ମୁଁ ପରା ସେଇଥିପାଇଁ ପ୍ରତିଜ୍ଞା ଭାଙ୍ଗୁ ନ ଥିଲି । ଯଦି ଭାଙ୍ଗିଲି, ତେବେ ତୁମମାନଙ୍କ ଆକ୍ରମଣ କ'ଣ ତା' ହେଲେ ସର୍ବପ୍ରଥମ ?" ହସି ହସି କହିଲେ ଡକ୍ଟର ପଟ୍ଟନାୟକ ।

"···ତୁମେମାନେ ଜାଣିଛ" ସେ ଆରମ୍ଭ କଲେ, "ଗତ ଅକ୍ଟୋବର ମାସ ୪ ତାରିଖ ଦିନ ପୃଥିବୀର ଏକ ଶକ୍ତିଶାଳୀ ରାଷ୍ଟ୍ର ସୋଭିଏଟ୍ ରୁଷିଆ ପୃଥିବୀ ଚାରିପାଖରେ ସର୍ବପ୍ରଥମ କୃତ୍ରିମ ଉପଗ୍ରହ ଘୂରାଇ ସାରା ପୃଥିବୀରେ ଅଭୂତପୂର୍ବ ଚାଞ୍ଚଲ୍ୟ ଖେଳାଇବା ସଙ୍ଗେ ସଙ୍ଗେ ପୃଥିବୀ ଇତିହାସରେ ଯେଉଁ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଲା, ତା'ର ପ୍ରଭାବ ଆଧୁନିକ ବିଜ୍ଞାନ ତଥା ଭବିଷ୍ୟତର ଗ୍ରହାନ୍ତର ଅଭିଯାନ ଉପରେ କମ ପଡ଼ି ନାହିଁ । ପୃଥିବୀର ସର୍ବପ୍ରଥମ ପରମାଣୁ ବୋମା ବିସ୍ଫୋରଣ ଯେପରି ଧ୍ୱଂସର ତୀବ୍ର ସଙ୍କେତ ଭିତରେ ନୂତନ ପରମାଣୁ ଯୁଗର ସୂତ୍ରପାତ କରିଥିଲା, ସେହିଭଳି ସୋଭିଏଟ୍ ରୁଷିଆର ଏହି କୃତ୍ରିମ ଉପଗ୍ରହ ସୃଷ୍ଟି ଶାନ୍ତିର ମଧୁର ସଙ୍କେତ ଭିତରେ ଜନ୍ମଦେଲା ଏକ ଅତି ଆଧୁନିକ ଆଶାବାଦୀ ଯୁଗ, ଯେଉଁ ଯୁଗର ପ୍ରବର୍ତ୍ତନ ଫଳରେ ମଣିଷ ଆବଦ୍ଧ ହୋଇ ରହିବନି ଏହି ସଂକୀର୍ଣ୍ଣ ପୃଥିବୀ ଭିତରେ । ସେ ଏହି ସଂକୀର୍ଣ୍ଣ ଭେଦାଭେଦ ଓ କୃଟନୀତିପୂର୍ଣ୍ଣ ଦୁନିଆରୁ ଅପସରିଯାଇ ଶାନ୍ତିର ଉତ୍ସ ଖୋଜିବ ସୌରଜଗତର ଅନ୍ୟାନ୍ୟ ଗ୍ରହ ଉପଗ୍ରହ ଭିତରେ । ଶତ ଶତ ବର୍ଷର ସୁନେଲି ସ୍ୱପ୍ନ ବାସ୍ତବତାର ରୂପ ନେବ ଏହି

କୃତ୍ରିମ ଉପଗ୍ରହର ସାହାଯ୍ୟ ନେଇ । ଗୋଟିଏ ଗ୍ରହରୁ ଅନ୍ୟ ଏକ ଗ୍ରହ କିମ୍ବା ଉପଗ୍ରହକୁ ଯିବା ଆଉ ବେଶି ଦିନ ଅସାଧ୍ୟ ହୋଇ ରହିବନି । ଗ୍ରହ ଗ୍ରହାନ୍ତର ଭ୍ରମଣରେ ଯେଉଁସବୁ ପ୍ରତିବନ୍ଧକ ଅତି ବିରାଟ ବୋଲି ପ୍ରଥମରୁ ବୋଧ ହେଉଥିଲା, ତାହା ଏହି କୃତ୍ରିମ ଉପଗ୍ରହ ସୃଷ୍ଟି ଦିନଠାରୁ ବରଫ ଭଳି ଧୀରେ ଧୀରେ ମିଳାଇଯିବାକୁ ବସିଲଣି ।

କୃତ୍ରିମ ଉପଗ୍ରହ କଅଣ ଓ ଏହାର ପ୍ରଭାବ ଆଧୁନିକ ବିଜ୍ଞାନ ଉପରେ ଏତେ କାହିଁକି, ଏହି ପ୍ରଶ୍ନ ହୁଏତ ତୁମ୍ଭମାନଙ୍କୁ ବିବ୍ରତ କରୁଥିବ । ତୁମ୍ଭେମାନେ ହୁଏତ ଭାବୁଥିବ ପୃଥିବୀ ଭଳି ଏକ ବିରାଟ ଗ୍ରହ ଚାରିପାଖରେ ସାମାନ୍ୟ କେଇଗୋଟି କୃତ୍ରିମ ଉପଗ୍ରହ ଘୂରାଇ ଏହି ସମସ୍ୟାର ସମାଧାନ କରିବା କ'ଣ ସମ୍ଭବପର ? ତୁମ୍ଭମାନଙ୍କଠାରୁ ଯେଉଁମାନେ ଆହୁରି ଅଧିକ ଚିନ୍ତା କରିପାରନ୍ତି, ସେମାନେ ଭାବୁଥିବେ ଯେ କୋଟି କୋଟି ଟଙ୍କା ଅର୍ଥ ବ୍ୟୟରେ ଏହି ସାମାନ୍ୟ କେଇଟା କୃତ୍ରିମ ଉପଗ୍ରହ ଘୂରାଇବା ନିର୍ବୋଧତା ଛଡ଼ା ଆଉ କିଛି ହୋଇ ନ ପାରେ ଓ ଏହି ସାମାନ୍ୟ ଘଟଣା ପାଇଁ ପୃଥିବୀସାରା ଚାଞ୍ଚଲ୍ୟ ଖେଳିଯିବା ସାଧାରଣଙ୍କ ଭିତରେ ଏକ ହିଷ୍ଟିରିଆ ରୋଗର ଉଦ୍ରେକ ଛଡ଼ା ଆଉ କିଛି ନୁହେଁ । କିନ୍ତୁ ସାଧାରଣ ଲୋକେ ଯେଉଁମାନେ ଆଧୁନିକ ବିଜ୍ଞାନ କେଉଁ ଆଡ଼କୁ ଗତି କରୁଛି ଲକ୍ଷ୍ୟ କରିବାର ଅବକାଶ ପାଇ ନାହାନ୍ତି ବା ସେ ଆଡ଼କୁ ସେମାନଙ୍କର ଦୃଷ୍ଟି ନାହିଁ, ଏହି ଘଟଣା ସେମାନଙ୍କ ମନକୁ ବିଶେଷଭାବରେ ଆଲୋଡ଼ିତ କରିବା ସ୍ୱାଭାବିକ ।

ତୁମ୍ଭେମାନେ ଜାଣିଛ ଯେ ଆମ ପୃଥିବୀର ଗୋଟିଏ ମାତ୍ର ଉପଗ୍ରହ ଅଛି, ତାହା ହେଉଛି ଆମର ପରିଚିତ ଚନ୍ଦ୍ର । ଏହା କୋଟି କୋଟି ବର୍ଷ ହେଲା ପୃଥିବୀ ଚାରିପାଖରେ ଘୂରୁଛି । ପୃଥିବୀ ଭଳି ବୃହସ୍ପତି; ଶନି, ମଙ୍ଗଳ ଆଦି ଗ୍ରହମାନଙ୍କର ମଧ୍ୟ ଉପଗ୍ରହମାନ ଅଛନ୍ତି । ଏହି ଉପଗ୍ରହ-ମାନଙ୍କୁ ବୋଲାଯାଏ ପ୍ରାକୃତିକ ଉପଗ୍ରହ ; କାରଣ ଏଗୁଡ଼ିକ ପ୍ରାକୃତିକ ଉପାୟରେ ସୃଷ୍ଟ ହୋଇଛନ୍ତି । ଏଗୁଡ଼ିକୁ ସୃଷ୍ଟି କରିବାପାଇଁ କୌଣସି କୃତ୍ରିମ ଉପାୟ ଅବଲମ୍ବନ କରାଯାଇନି । ଆକାରରେ ଛୋଟ ହେଉ ବା ବଡ଼ ହେଉ ଯେଉଁ ପଦାର୍ଥ ମଣିଷଦ୍ୱାରା ତିଆରି କରାଯାଇ କୃତ୍ରିମ ଉପାୟରେ ପୃଥିବୀ ଚାରିପାଖରେ ଉପଗ୍ରହ ଭଳି ଘୂରାଯାଇପାରେ, ତାହା କୃତ୍ରିମ

ଉପଗ୍ରହ ଭାବରେ ପରିଚିତ ହେବା ସ୍ୱାଭାବିକ । ସୋଭିଏଟ୍ ରାଷ୍ଟ୍ର ଗତ ୪ ତାରିଖରେ ଯେଉଁ ୨୩ ଇଞ୍ଚ ବ୍ୟାସବିଶିଷ୍ଟ ଧାତବ ଗୋଲକଟିଏ ପୃଥିବୀ ଚତୁଃପାଖରେ ଘୂରାଇଥିଲା, ତାହା ହେଉଛି ଆମ ପୃଥିବୀର ସର୍ବପ୍ରଥମ କୃତ୍ରିମ ଉପଗ୍ରହ । ପୃଥିବୀ ଚତୁଃପାଖରେ ଏହି କୃତ୍ରିମ ଉପଗ୍ରହ ଘୁରାଇବା ପାଇଁ ଆମେରିକା ଯୁକ୍ତରାଷ୍ଟ୍ର ଓ ସୋଭିଏଟ୍ ଯୁକ୍ତରାଷ୍ଟ୍ର ଏ ଦିଗରେ ସର୍ବପ୍ରଥମ ଚେଷ୍ଟା କରିଥିଲେ ହେଁ ଏହି ଚେଷ୍ଟାରେ ପ୍ରଥମ ବିଜୟୀ ହେଲା ସୋଭିଏଟ୍ ରାଷ୍ଟ୍ର; ଫଳରେ ପୃଥିବୀ ଚତୁଃପାଖରେ ଘୂରିପାରିଲା ସର୍ବପ୍ରଥମ କୃତ୍ରିମ ଚନ୍ଦ୍ର ବା ଉପଗ୍ରହ, ଯାହାର ବର୍ଣ୍ଣନାରେ ଆଜି ସାରାପୃଥିବୀର ସମ୍ବାଦପତ୍ରଗୁଡ଼ିକ ପୂରିଉଠିଛି ।

ଆନ୍ତର୍ଗ୍ରହ, ଆନ୍ତର୍ନକ୍ଷତ୍ର ଭ୍ରମଣ ସମ୍ବନ୍ଧରେ ଆମ ଦେଶର ପୂର୍ବକାଳର ଲୋକେ କିପରି ଆଗ୍ରହୀ ଥିଲେ, ତାହା ସେ ସମୟର ସାହିତ୍ୟ ଓ ପୁରାଣ ଆଦିରୁ ଜଣାପଡ଼େ । ସ୍ୱର୍ଗ, ମର୍ତ୍ତ୍ୟ, ବୈକୁଣ୍ଠପୁର, ଧ୍ରୁବଲୋକ ଆଦିର କଳ୍ପନା, ଦେବତା ଓ ନାରଦ ଆଦିଙ୍କର ଗୋଟିଏ ଲୋକରୁ ଆଉ ଗୋଟିଏ ଲୋକକୁ ଯିବାଆସିବା କଳ୍ପନା ସେକାଳର ଲେଖକ ତଥା ଜନ-ସାଧାରଣଙ୍କର ଏହି ଭ୍ରମଣ ପ୍ରତି ପ୍ରବଳ ଆକାଂକ୍ଷାର ସ୍ପଷ୍ଟ ପ୍ରମାଣ ଦିଏ । ଆମ ଦେଶ ଭଳି ଅନ୍ୟ ଦେଶର ଲୋକେ ମଧ୍ୟ ଏହିଭଳି ଭ୍ରମଣ ପ୍ରତି ଅତି ପୂର୍ବକାଳରୁ ବିଶେଷ ଆଗ୍ରହୀ ଥିବାର ପ୍ରମାଣ ରହିଛି; କିନ୍ତୁ ଏହି ଆଶା କିପରି ବାସ୍ତବତାରେ ପରିଣତ ହେବ, ସେହି ଥିଲା ଶତ ଶତ ବର୍ଷର ସମସ୍ୟା ।

ଏହି ଆନ୍ତର୍ଗ୍ରହ ଭ୍ରମଣ କିପରି କଳ୍ପନା-ରାଇଜରୁ ଆସି ବାସ୍ତବତାରେ ପରିଣତ ହେବ, ସେହି ଧାରଣା ଊନବିଂଶ ତଥା ବିଂଶ ଶତାବ୍ଦୀର ବୈଜ୍ଞାନିକମାନଙ୍କ ମନକୁ ବିବ୍ରତ କରିଥିଲେ ହେଁ ଏ ଦିଗରେ ସର୍ବପ୍ରଥମେ ଏକ ସୁ-ଚିନ୍ତିତ ବୈଜ୍ଞାନିକ ଯୋଜନା ଦେଇଥିଲେ ଜଣେ ରୁଷ ବୈଜ୍ଞାନିକ ଆଜକୁ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ତଳେ । ସେହି ବୈଜ୍ଞାନିକଙ୍କ ନାମ ହେଉଛି ସିଓଲ୍‌କୋଭସ୍କି । ସେ "The rocket in cosmic space" ନାମକ ଏକ ପୁସ୍ତକ ପ୍ରଣୟନ କରି ଗ୍ରହାନ୍ତରକୁ ଯିବା କିପରି ସମ୍ଭବପର ବୈଜ୍ଞାନିକ ଆଲୋଚନା ସାହାଯ୍ୟରେ ପ୍ରମାଣ କରି ସାରା ବିଜ୍ଞାନ-ସମାଜର ଆଖି ଖୋଲି ଦେଇଥିଲେ । ସେହିଦିନଠାରୁ ଅନ୍ୟ ଗ୍ରହ ଉପଗ୍ରହକୁ

ଯିବା ପୂର୍ବପୂର୍ବ ଅସମ୍ଭବ ନୁହେଁ ବୋଲି ଜଣାପଡ଼ିଥିଲେ ମଧ୍ୟ ପ୍ରକୃତ ମହାଶୂନ୍ୟଯାନ ତିଆରି କରି ଏହି କଳ୍ପନାକୁ କାର୍ଯ୍ୟରେ ପରିଣତ କରିବା ଏକରକମ ଦୁରୂହ ହୋଇ ରହିଥିଲା । କିନ୍ତୁ ଗୋଟିଏ ଦିଗରେ ପରମାଣୁ ଯୁଗ ତଥା ପରମାଣୁ ଶକ୍ତିର ଆବିର୍ଭାବ ଓ ଅନ୍ୟ ଦିଗରେ ରକେଟ୍ ବିଜ୍ଞାନର ଆଶାତୀତ ଉନ୍ନତି ଏହି ଦୁଃସାଧ୍ୟ କାର୍ଯ୍ୟକୁ ଯେ ସଫଳ କରାଇ-ପାରିବ, ଏହି ଧାରଣା ବୈଜ୍ଞାନିକମାନଙ୍କର ମନରେ ଆଶାର ସଞ୍ଚାର କରିଥିଲା । ତେବେ ଏ ଦିଗରେ ଗବେଷଣା କରିବା ପରମାଣୁ ବୋମା ଗବେଷଣା ଭଳି ଖୁବ୍ ଖର୍ଚ୍ଚସାପେକ୍ଷ ଓ ବ୍ୟୟସାଧ୍ୟ ହୋଇଥିବାରୁ ଆମେରିକା ଯୁକ୍ତରାଷ୍ଟ୍ର ଓ ସୋଭିଏଟ୍ ଯୁକ୍ତରାଷ୍ଟ୍ର ଛଡ଼ା ଅନ୍ୟ କେହି ଦେଶ ଏ ଦିଗରେ ସାହସ କରିବେନି ବୋଲି ଜଣା ପଡ଼ୁଥାଇଥିଲା । କାରଣ ଏହି ଦୁଇ ଦେଶର ବିଜ୍ଞାନ ତଥା ଇଞ୍ଜିନିୟରିଂ ଜ୍ଞାନ ଓ ସର୍ବୋପରି ଆର୍ଥିକ ଅବସ୍ଥା ଅନ୍ୟ ଦେଶ ତୁଳନାରେ ଯଥେଷ୍ଟ ଉଚ୍ଚରେ ଥିବାରୁ ଏହି ଦେଶଦ୍ୱୟଠାରୁ ଏଭଳି ଏକ ବ୍ୟୟସାପେକ୍ଷ ଯୋଜନା ଆଶା କରିବା ସ୍ୱାଭାବିକ ।

ଅନ୍ୟ ଗ୍ରହ ଓ ଉପଗ୍ରହମାନଙ୍କୁ ଯିବାପାଇଁ ହେଲେ ପୃଥିବୀପୃଷ୍ଠରୁ ସିଧାସଳଖ ନ ଯାଇ ମହାଶୂନ୍ୟ ଭିତରେ ଷ୍ଟେସନମାନ ପ୍ରତିଷ୍ଠା କରି ସେହିସବୁ ଷ୍ଟେସନ ଦେଇ ଯିବା ଅଧିକ ସୁବିଧାଜନକ ବୋଲି ଉକ୍ତ ଗବେଷଣାରେ ରତ ବୈଜ୍ଞାନିକମାନେ ପ୍ରତିପାଦନ କରିଥିଲେ । ଏହି ଷ୍ଟେସନମାନଙ୍କରୁ ଅନ୍ୟ ଗ୍ରହ ଉପଗ୍ରହକୁ ଯିବା ଯେତେ ସୁବିଧାଜନକ ହେବ, ପୃଥିବୀପୃଷ୍ଠରୁ ସିଧାସଳଖ ଯିବା ସେତେ ସହଜସାଧ୍ୟ ହେବନି । ତେଣୁ ମହାଶୂନ୍ୟ ଭିତରେ ଷ୍ଟେସନ ପ୍ରତିଷ୍ଠା କରିବା ଆନ୍ତର୍ଗ୍ରହ ଅଭିଯାନର ଏକ ପ୍ରଧାନ ଅଙ୍ଗ ବୋଲି ବିବେଚିତ ହୋଇଥିଲା । ଏପରି କି ପୃଥିବୀଠାରୁ ଅପେକ୍ଷାକୃତ ଅଳ୍ପ ଦୂର ଚନ୍ଦ୍ରମଣ୍ଡଳକୁ ଯିବାକୁ ହେଲେ ପୃଥିବୀ ଓ ଚନ୍ଦ୍ର ମଧ୍ୟରେ ସେହିଭଳି ଷ୍ଟେସନ ପ୍ରତିଷ୍ଠା ନ କଲେ ନ ହୁଏ । ଅବଶ୍ୟ ମଙ୍ଗଳ ଓ ବୁଧ ଗ୍ରହକୁ ଯିବାପାଇଁ ହେଲେ ଚନ୍ଦ୍ରମଣ୍ଡଳ ଏକ ଷ୍ଟେସନର କାମ କରିପାରେ ।

ସୌରଜଗତର ଅନ୍ୟ ଗ୍ରହକୁ ଯିବାକୁ ହେଲେ ପ୍ରଥମତଃ ଚନ୍ଦ୍ର-ମଣ୍ଡଳକୁ ଯିବା ଦରକାର ଓ ସେଥିପାଇଁ ପୃଥିବୀ ଓ ଚନ୍ଦ୍ର ମଧ୍ୟରେ ଅନ୍ତତଃ

ଗୋଟିଏ ମହାଶୂନ୍ୟ ଷ୍ଟେସନ ପ୍ରତିଷ୍ଠା କରିବା ଦରକାର । ଏହି ମହାଶୂନ୍ୟ ଷ୍ଟେସନର ଗୋଟିଏ ପ୍ରକୃତି ହେବ ଯେ ଏହା ସାଧାରଣ ଷ୍ଟେସନ ଭଳି ସ୍ଥିର ନ ରହି ପୃଥିବୀ ଚାରିପାଖରେ ଘୂରିବୁଲିବ । ଚନ୍ଦ୍ରମଣ୍ଡଳକୁ ଯିବା ପାଇଁ ହେଲେ ଏହିଭଳି ଏକ ମହାଶୂନ୍ୟ ଷ୍ଟେସନ ପୃଥିବୀଠାରୁ କିଛି ଦୂରରେ ପ୍ରତିଷ୍ଠା କରିବା ଦରକାର । ସେହି ଯେଉଁ ମହାଶୂନ୍ୟ ଷ୍ଟେସନଟି ପ୍ରତିଷ୍ଠିତ ହେବ, ତାହା ସାଧାରଣ ଉପଗ୍ରହ ଭଳି ପୃଥିବୀ ଚାରିପାଖରେ ଘୂରିବ ବୋଲି ଏହା ପରିଚିତ ହେବ ଏକ କୃତ୍ରିମ ଉପଗ୍ରହ ଭାବରେ । ତେଣୁ ଆନ୍ତର୍ଗ୍ରହ ଭ୍ରମଣ ପାଇଁ ଏହି କୃତ୍ରିମ ଉପଗ୍ରହର ଆବଶ୍ୟକତା କେତେ, ତାହା ଉପରୋକ୍ତ ଆଲୋଚନାରୁ ଜଣାପଡ଼େ ଓ ଏହାକୁ ଉପଲବ୍ଧି କରି ଆମେରିକାର ଯୁକ୍ତରାଷ୍ଟ୍ର ଓ ସୋଭିଏଟ୍ ରାଷ୍ଟ୍ର ସର୍ବପ୍ରଥମେ କୃତ୍ରିମ ଉପଗ୍ରହ ସୃଷ୍ଟି କରିବାପାଇଁ ଆଗଭର ହୋଇ ବାହାରି ପଡ଼ିଥିଲେ ।

ଗତ ୧୯୫୫ ମସିହା ଜୁଲାଇ ମାସରେ ଆମେରିକାର ଯୁକ୍ତରାଷ୍ଟ୍ର "କୃତ୍ରିମ ଉପଗ୍ରହ ପରିକଳ୍ପନା" ନାମରେ ଏକ ଯୋଜନା ପ୍ରତିଷ୍ଠା କରିଥିଲା ଯୁକ୍ତରାଷ୍ଟ୍ରର ରାଜଧାନୀ ଓ୍ୱାଶିଂଟନଠାରେ । ସେହି ଯୋଜନାରେ ସେ ଦେଶର ବୈଜ୍ଞାନିକମାନେ ସ୍ଥିର କରିଥିଲେ ଯେ ସେମାନେ ପୃଥିବୀ ଚାରିପାଖରେ ସାଢ଼େ ଉଣେଇଶ ଇଞ୍ଚ ବ୍ୟାସବିଶିଷ୍ଟ ଗୋଟିଏ କୃତ୍ରିମ ଉପଗ୍ରହ ସୃଷ୍ଟି କରିବେ । ଏହି ଉପଗ୍ରହର ଓଜନ ହେବ ପ୍ରାୟ ୧୧° ପାଉଣ୍ଡ । ୧୯୫୭ ମସିହା ଜୁଲାଇ ମାସ ପରେ ଏହା ଆକାଶକୁ ଛଡ଼ାଯାଇପାରିବ ବୋଲି ସେମାନେ ଆଶା ପୋଷଣ କରିଥିଲେ । ପୃଥିବୀପୃଷ୍ଠଠାରୁ ସେମାନଙ୍କ କୃତ୍ରିମ ଉପଗ୍ରହର ଦୂରତା ହେବ ପ୍ରାୟ ଦୁଇ ଶହଠାରୁ ତିନି ଶହ ମାଇଲ ଭିତରେ ଓ ଏହା ଘଣ୍ଟାକୁ ଅଠର ହଜାର ମାଇଲ ବେଗରେ ଗତି କରି ପୃଥିବୀକୁ ପ୍ରତି ୯° ମିନିଟରେ ପ୍ରଦକ୍ଷିଣ କରିବ । ଏହି କୃତ୍ରିମ ଉପଗ୍ରହ ସାହାଯ୍ୟରେ ମହାଶୂନ୍ୟର ଅବସ୍ଥା, ସେଠାକାର ନାନାଦି ସୁବିଧା ଅସୁବିଧା ଆବିଷ୍କାର ଓ ସୁଦୂର ମହାଶୂନ୍ୟ ଭିତରେ ଷ୍ଟେସନ ପ୍ରତିଷ୍ଠା କେତେଦୂର ସମ୍ଭବପର ଓ ଏହା ଆନ୍ତର୍ଗ୍ରହ ଭ୍ରମଣରେ କେତେଦୂର ସାହାଯ୍ୟକାରୀ ହେବ, ତାହା ପୁଙ୍ଖାନୁପୁଙ୍ଖରୂପେ ପରୀକ୍ଷା କରିବା ସେହି ଯୋଜନାର ପ୍ରଧାନ ଉଦ୍ଦେଶ୍ୟ ଥିଲା ।

ଯୁକ୍ତରାଷ୍ଟ୍ରର ଏହି ଯୋଜନା ଜନ୍ମ ପାଇବାର ତିନି ମାସ ପୂର୍ବରୁ ଅର୍ଥାତ୍ ୧୯୫୫ ମସିହା ଏପ୍ରିଲ ମାସରେ ସୋଭିଏଟ୍ ରାଜଧାନୀ ମସ୍କୋ ନଗରରେ ସୋଭିଏଟ ରାଷ୍ଟ୍ରର କୃତ୍ରିମ ଉପଗ୍ରହ ପରିକଳ୍ପନା ନାମକ ଆଉ ଏକ ଯୋଜନା ସୃଷ୍ଟି ହୋଇଥିଲା । ଏହି ଯୋଜନା ଅନୁଯାୟୀ ସୋଭିଏଟ ରାଷ୍ଟ୍ରର ବଡ଼ ବଡ଼ ବୈଜ୍ଞାନିକ ଓ ବିଶାରଦମାନଙ୍କୁ ନେଇ ଗୋଟିଏ କାର୍ଯ୍ୟକାରୀ କମିଶନ ଗଢ଼ାଯାଇଥିଲା । ମହାଶୂନ୍ୟକୁ ଜୟ କରିବା ଦିଗରେ ସୋଭିଏଟ ରାଷ୍ଟ୍ରର ଯେଉଁ ଯେଉଁ ସ୍ଥାନରେ ଯେଉଁସବୁ ବିକ୍ଷିପ୍ତ ଗବେଷଣା ଚାଲିଥିଲା, ସେଗୁଡ଼ିକୁ ଏକତ୍ରିତ କରି ଆହୁରି ଅଧିକ ବେଗରେ ଗବେଷଣା ଚଳାଇବାପାଇଁ ଏହି କମିଶନ ହାତରେ ଅଧିକାର ନ୍ୟସ୍ତ କରାଗଲା । ମହାଶୂନ୍ୟ ଭିତରେ କୃତ୍ରିମ ଉପଗ୍ରହ ସୃଷ୍ଟିକରି ସେହି ଉପଗ୍ରହ ସାହାଯ୍ୟରେ ମହାଶୂନ୍ୟର ନାନା ଅବସ୍ଥା ଜାଣିବା ପାଇଁ ଗବେଷଣା କରିବା କମିଶନର ଅନ୍ୟତମ ଉଦ୍ଦେଶ୍ୟ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହି ବର୍ଷ ଅଗଷ୍ଟ ମାସରେ କୋପେନହେଗେନଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ଗାଣିତିକ ଜ୍ୟୋତିଷବିଜ୍ଞାନ ଅଧିବେଶନରେ ସୋଭିଏଟ ପ୍ରତିନିଧିମାନେ, ପ୍ରକାଶ କରିଥିଲେ ଯେ ଯୁକ୍ତରାଷ୍ଟ୍ର କୃତ୍ରିମ ଉପଗ୍ରହ ପ୍ରତିଷ୍ଠା କରିବା ପୂର୍ବରୁ ସେମାନେ ସେମାନଙ୍କ କୃତ୍ରିମ ଉପଗ୍ରହ ମହାଶୂନ୍ୟରେ ପ୍ରତିଷ୍ଠା କରିପାରିବେ ଓ ସେମାନଙ୍କ କୃତ୍ରିମ ଉପଗ୍ରହ ଯୁକ୍ତରାଷ୍ଟ୍ରର ଉପଗ୍ରହଠାରୁ ଆକାରରେ ଢେର୍ ବଡ଼ ହେବ । ସେହି ବର୍ଷ ଅଗଷ୍ଟ ମାସରେ ସେ ଦେଶର ନେତାମାନେ ଯୁକ୍ତରାଷ୍ଟ୍ର ସହିତ ସହଯୋଗ କରି ଏହି କୃତ୍ରିମ ଉପଗ୍ରହ ଦିଗରେ ଗବେଷଣା ଚଳାଇବାପାଇଁ ସୋଭିଏଟ ରାଷ୍ଟ୍ର ପ୍ରସ୍ତୁତ ଅଛି ବୋଲି ପ୍ରକାଶ କରିଥିଲେ ।

ଦୁଇ ଦେଶର ଏତାଦୃଶ ତତ୍ପରତାରୁ ସ୍ପଷ୍ଟ ଧାରଣା ହେଉଥିଲା ଯେ ଉଭୟେ ଏହି କୃତ୍ରିମ ଉପଗ୍ରହ ସୃଷ୍ଟି ଦିଗରେ ବେଶ ଆଗ୍ରହୀ । କିନ୍ତୁ ଉଭୟେ ଏକତ୍ରିତ ହୋଇ ଏକ ସଙ୍ଗରେ କାର୍ଯ୍ୟ କରିବା କେତେଦୂର ସମ୍ଭବପର, ସେଥିରେ ଅନେକେ ଅବଶ୍ୟ ସନ୍ଦିହାନ ହୋଇପଡ଼ିଥିଲେ ।

ଗତ ଅଗଷ୍ଟ ମାସରେ ସୋଭିଏଟ ରାଷ୍ଟ୍ର ଯେତେବେଳେ ପ୍ରକାଶ କଲା ଯେ ଆନ୍ତର୍ମହାଦେଶୀୟ ବାଲିଷ୍ଟିକ ମିଜାଇଲ ପ୍ରସ୍ତୁତିରେ ସେ କୃତକାର୍ଯ୍ୟତା ହାସଲ କରିପାରିଛି, ସେତେବେଳେ ଏହି ଦୁଇ ଦେଶର

ଅଗ୍ରଗତିକୁ ଲକ୍ଷ୍ୟ କରୁଥିବା ବୈଜ୍ଞାନିକମାନେ ଆଭାସ ପାଇପାରିଥିଲେ ଯେ ଏହି ପ୍ରତିଯୋଗିତାରେ ସୋଭିଏଟ ରଷ୍ଟ୍ର ସର୍ବାଗ୍ରେ କୃତକାର୍ଯ୍ୟ ହେବ, କାରଣ ସୋଭିଏଟ୍ ରଷ୍ଟ୍ରର ରକେଟ-ଜ୍ଞାନ ଯୁକ୍ତରାଷ୍ଟ୍ରର ରକେଟ-ଜ୍ଞାନଠାରୁ ଅଧିକ ଉନ୍ନତତର । ଯାହାହେଉ ସେମାନେ ବାନ୍‌ଗାର୍ଡ଼ କ୍ଷେପଣାସ୍ତ୍ରର କଥା ପ୍ରକାଶ କରିବାର ଦୁଇ ମାସ ନ ପୂରୁଣୁ ମହାଶୂନ୍ୟରେ କୃତ୍ରିମ ଉପଗ୍ରହ ସୃଷ୍ଟି କରି ସାରାପୃଥିବୀକୁ ଚମତ୍କୃତ କରିଦେଇଥିଲେ ।

କୃତ୍ରିମ ଉପଗ୍ରହ ସୃଷ୍ଟି ପଛରେ ଖୁବ୍ ଉନ୍ନତତର ବୈଜ୍ଞାନିକ ତଥା ଇଞ୍ଜିନିୟରିଂ ଜ୍ଞାନ ଯେ ରହିଛି, ଏହା ଭୁଲିଯିବା ଉଚିତ ନୁହେଁ । ଏଥିଭିତରୁ ଉନ୍ନତ ରକେଟ ବିଜ୍ଞାନ ଯେ ଏକ ମୁଖ୍ୟ ଅଂଶ ଗ୍ରହଣ କରିଛି ଏହା ଧରିନେବାକୁ ପଡ଼ିବ । କାରଣ କୃତ୍ରିମ ଉପଗ୍ରହ ସୃଷ୍ଟି କରିବାପାଇଁ ଏହି ରକେଟ ହେଉଛି ପ୍ରଧାନ ସମ୍ବଳ । ସୋଭିଏଟ୍ ରଷ୍ଟ୍ର ବର୍ତ୍ତମାନ ଯେଉଁ କୃତ୍ରିମ ଉପଗ୍ରହ ସୃଷ୍ଟି କରିଛି ତାହା ଏତେ ଉପରକୁ ଉଠିପାରିଛି ରକେଟ୍ ସାହାଯ୍ୟରେ ! ବିଶେଷଜ୍ଞମାନେ ମତ ଦିଅନ୍ତି ଓ ମୋର ମଧ୍ୟ ବ୍ୟକ୍ତିଗତ ଅଭିଜ୍ଞତା ଅଛି ଯେ ଏଥିପାଇଁ ସୋଭିଏଟ୍ ବୈଜ୍ଞାନିକମାନଙ୍କୁ ତିନି ଷ୍ଟେପ୍ ରକେଟ୍ ପଦ୍ଧତି ବ୍ୟବହାର କରିବାକୁ ପଡ଼ିଥିଲା । ବୈଜ୍ଞାନିକମାନେ ଆଗରୁ ଯେଉଁ ଗଣନା କରିଥିଲେ ଯେ ପାଞ୍ଚ ଷ୍ଟେପ୍ ରକେଟ ପଦ୍ଧତିଦ୍ୱାରା ପୃଥିବୀପୃଷ୍ଠରୁ ଯାଇ ଚନ୍ଦ୍ରମଣ୍ଡଳରେ ପହଞ୍ଚିବା ସମ୍ଭବପର, ସେହି ଗଣନା ପ୍ରକୃତରେ କେତେଦୂର ଯଥାର୍ଥ, ତାହା ଏହି ତିନି ଷ୍ଟେପ ରକେଟ ପଦ୍ଧତିର ସଫଳତାରୁ ସ୍ପଷ୍ଟ ଜଣାପଡ଼ିଲା ।

ସୋଭିଏଟ୍ ରଷ୍ଟ୍ରର ଏହି ଐତିହାସିକ କୃତକାର୍ଯ୍ୟତା କୌଣସି ଏକ ଜାତି ବା ଦେଶର ନିଜସ୍ୱ ହୋଇ ରହିବ ବୋଲି ଭାବିବା କଦାପି ଉଚିତ ନୁହେଁ । ସୋଭିଏଟ୍ ରଷ୍ଟ୍ର ଏତେ ଶ୍ରମ ଓ ଧନବ୍ୟୟ କରି ଯାହା ହାସଲ କଲା, ତାହା ହେଉଛି ସାରା ମଣିଷ ଜାତିର । କୃତ୍ରିମ ଉପଗ୍ରହର ଏହି କୃତ-କାର୍ଯ୍ୟତା ଆଜି ଯାହା ନ କରୁ ପଛକେ, କଳ୍ପନା ରାଇଜର କେତେକ ବୈଜ୍ଞାନିକ ବିଷୟକୁ ବାସ୍ତବ କ୍ଷେତ୍ରକୁ ଓଟାରି ଆଣି ଏକ ସମୟର ସୁନ୍ଦର ଓ ସୁକୋମଳ କଳ୍ପନା କପରି ନିଗିଠ ବାସ୍ତବତା ଆଡ଼କୁ ଧାବମାନ ହୋଇପାରେ, ତାହା ବୁଝାଇବାରେ କ୍ଷମ ହୋଇପାରିଛି । ସୋଭିଏଟ୍ ରୁଷିଆର ଏହି ବିରାଟ ସଫଳତା ରଷ୍ଟ୍ର ରଷ୍ଟ୍ର ଭିତରେ ହିଂସା; ଦ୍ୱେଷ ଦୂରୀକରଣ ନିମିତ୍ତ କ

ଆନ୍ତର୍ଜାତିକ କ୍ଷେତ୍ରରେ ଏକତା ସୃଷ୍ଟି କରି ପୃଥିବୀର ସବୁ ଜାତି ଓ ଦେଶକୁ ଏକାଠି କରାଇ ସଙ୍ଘବଦ୍ଧ ଭାବରେ ଅନ୍ୟ ଗ୍ରହ ଓ ଉପଗ୍ରହମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରୁ ଓ ବର୍ଷ ବର୍ଷର ସୁନେଲି ସ୍ୱପ୍ନ ବାସ୍ତବତାର ରୂପ ନେଉ ଏହାହିଁ ଥିଲା ସମସ୍ତଙ୍କର କାମନା ।

"କିନ୍ତୁ ଗତବର୍ଷ ଅକ୍ଟୋବର ମାସରେ ଯେତେବେଳେ ରୁଷିଆର ସର୍ବପ୍ରଥମ କୃତ୍ରିମ ଉପଗ୍ରହ ବା ସ୍ପୁଟ୍‌ନିକ୍ ପ୍ରଥମ ଶୂନ୍ୟମଣ୍ଡଳର ଶୋଭାବର୍ଦ୍ଧନ କରି ପୃଥିବୀ ଚାରିପାଖରେ ଘୂରି ବୁଲିଲା ସେତେବେଳେ ପୃଥିବୀର କେତେକ ବିଜ୍ଞାନୋନ୍ନତ ଦେଶ ଭୟ ଓ ଆତଙ୍କରେ ମ୍ରିୟମାଣ ହୋଇପଡ଼ିଥିଲେ । କେହି କେହି ମଧ୍ୟ କଳ୍ପନା କରିବାକୁ ପଶ୍ଚାତ୍‌ପଦ ହୋଇ ନ ଥିଲେ ଯେ ମହାଶୂନ୍ୟରେ ଘୂରୁଥିବା ଏହି ସ୍ପୁଟ୍‌ନିକ୍ ପଛରେ ସଂପୃକ୍ତ ରାଷ୍ଟ୍ରର ଏକ ତୀବ୍ର ଧ୍ୱଂସର ସଂକେତ ଲୁଚିରହିଛି । ଦରକାର ପଡ଼ିଲେ ଏହି ପୃଥିବୀ ପୃଷ୍ଠରୁ କେତେକ ଦେଶକୁ ନିଶ୍ଚିହ୍ନ କରିବାପାଇଁ ଏହି ସ୍ପୁଟ୍‌ନିକ୍‌ର ସାହାଯ୍ୟ ନିଆଯାଇ ତାଣ୍ଡବଲୀଳା ସୃଷ୍ଟି କରାଯାଇ ପାରିବ । ଏହି ଭୟାବହ କଳ୍ପନାର ବଶବର୍ତ୍ତୀ ହୋଇ ସେମାନେ ଉଚ୍ଚସ୍ୱରରେ ଚିତ୍କାରକରି ଉଠିଥିଲେ ଯେ ଏହି ସ୍ପୁଟ୍‌ନିକ୍ ପ୍ରକୃତରେ ଶାନ୍ତିର ପ୍ରତୀକ ନୁହେଁ, ଏହା ଧ୍ୱଂସର ଅଗ୍ରଦୂତ । ସେମାନେ ସ୍ପୁଟ୍‌ନିକ୍‌କୁ ରାଜନୀତି ସହିତ ଏପରି ହୀନଭାବରେ ଜଡ଼ିତ କରିଦେଲେ ଯେ ବିଜ୍ଞାନର ଏହି ଶ୍ରେଷ୍ଠତମ ଉଦ୍ଭାବନ ଲୋକଙ୍କ ମନରେ ଆଶାନୁରୂପ ଉତ୍ସାହ ଆନନ୍ଦ ସଞ୍ଚାର କରିପାରିଲେ ନାହିଁ କି ଏହାର ଉଦ୍ଭାବକମାନେ ସେମାନଙ୍କର ଏହି ଇତିହାସପ୍ରସିଦ୍ଧ ଉଦ୍ଭାବନ ପାଇଁ ସାରାବିଶ୍ୱରୁ ଆଶାନୁରୂପ ପ୍ରଶଂସା ଓ ଜୟମାଲ୍ୟ ପାଇପାରିଲେ ନାହିଁ ।

କିନ୍ତୁ ବିଭିନ୍ନ ରାଷ୍ଟ୍ରମାନଙ୍କର ଏହି ଆଶଙ୍କା ଯେ ପ୍ରକୃତରେ ଅମୂଳକ, ଏହା ନ କହିଲେ ମଧ୍ୟ ଆଜିକାଲି ସମସ୍ତେ ପ୍ରାୟ ଉପଲବ୍ଧି କଲେଣି । ସ୍ପୁଟ୍‌ନିକ୍ ଯେଉଁ ଆନ୍ତର୍ମହାଦେଶୀୟ ବାଲିଷ୍ଟିକ ରକେଟ୍ ସାହାଯ୍ୟରେ ମହାଶୂନ୍ୟକୁ ପ୍ରେରିତ ହୁଏ, ସେହି ରକେଟ୍‌ର ପ୍ରଭାବ ଭବିଷ୍ୟତ ଯୁଦ୍ଧବିଗ୍ରହ ଉପରେ ଥାଇପାରେ, କିନ୍ତୁ ଏହାଦ୍ୱାରା ପ୍ରେରିତ ସ୍ପୁଟ୍‌ନିକ୍‌ର ଯୁଦ୍ଧବିଗ୍ରହ ଉପରେ ଯେ କୌଣସି ପ୍ରଭାବ ନାହିଁ, ଏହା ନିଃସନ୍ଦେହରେ କୁହାଯାଇପାରେ । ତେଣୁ ସ୍ପୁଟ୍‌ନିକ୍ ଉପରେ ଅଯଥା ସାମରିକ ଗୁରୁତ୍ୱ

ଆରୋପକରି ବିଜ୍ଞାନର ଏହି ଶ୍ରେଷ୍ଠତମ ଉଦ୍ଭାବନର ମହତ୍ତ୍ୱକୁ ନଷ୍ଟ କରିଦେବା ଉଚିତ ନୁହେଁ । ବରଂ ଏହି ସ୍ପୁଟ୍‌ନିକ୍‌ର ସାହାଯ୍ୟ ନେଇ ମହାଶୂନ୍ୟ ତଥା ସୌରମଣ୍ଡଳର ନାନା ରହସ୍ୟଜନକ ତଥ୍ୟ ଜାଣିବା କେତେଦୂର ସମ୍ଭବପର, ତାହା ଆଲୋଚନା କରିବା ଉଚିତ । ଏହା ଜାଣିଲେ ଏହି ଉଦ୍ଭାବନ ତଥା ଏହାର ଉଦ୍ଭାବକମାନଙ୍କ ପ୍ରତି ମସ୍ତକ ଭକ୍ତିରେ ସ୍ୱତଃ ନତ ହୋଇଆସେ ।

ତୁମ୍ଭେମାନେ ସବୁ ଜାଣିଛ ୧୯୫୭ ମସିହା ଜୁଲାଇ ମାସ ପହିଲାଠାରୁ ସାରାପୃଥିବୀରେ ଆନ୍ତର୍ଜାତିକ ଭୂପଦାର୍ଥବିଦ୍ୟାସମ୍ବତ୍ସର ମହା ଆଡ଼ମ୍ବର ସହକାରେ ପାଳିତ ହୋଇଆସୁଅଛି । ଏଥିରେ ଭାଗ ନେଇଛନ୍ତି ପୃଥିବୀର ଚଉଷଠିଟି ରାଜ୍ୟ । ଏହି ସମ୍ବତ୍ସର ସମାପ୍ତ ହେବ ଚଳିତ ବର୍ଷ ଡିସେମ୍ବର ମାସ ୩୧ ତାରିଖ ଦିନ । ଏହି ସମ୍ବତ୍ସର ଉପଲକ୍ଷେ ପୃଥିବୀର ଉପରୋକ୍ତ ଦେଶସମୂହର ବୈଜ୍ଞାନିକମାନେ ମିଳିତ ହୋଇ ପରସ୍ପରର ସାହଚର୍ଯ୍ୟରେ ପୃଥିବୀ, ଆକାଶମଣ୍ଡଳ, ଶୂନ୍ୟମଣ୍ଡଳ, ସୂର୍ଯ୍ୟ ଓ ସୌରମଣ୍ଡଳ, ମେରୁ ଓ ମେରୁପ୍ରଭା ଓ ସର୍ବୋପରି ସମୁଦ୍ର ସମ୍ବନ୍ଧରେ ନାନା ନୂତନ ତଥ୍ୟ ସଂଗ୍ରହ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇଛନ୍ତି । ଏହି ସମ୍ବତ୍ସର ଉପଲକ୍ଷେ ପୃଥିବୀ ଉପରିସ୍ଥ ଆକାଶମଣ୍ଡଳର ପ୍ରକୃତ ଉଚ୍ଚତା, ମେରୁମଣ୍ଡଳ ଓ ମେରୁପ୍ରଭା, ଆକାଶମଣ୍ଡଳର ଉପର ସ୍ତରରେ ବିଶ୍ୱରଶ୍ମି, ରଞ୍ଜନରଶ୍ମିର ବିଦ୍ୟୁତ୍ ଆବେଶ ଆଦି ସମ୍ବନ୍ଧରେ ବହୁ ନୂତନ ତଥ୍ୟ ସଂଗୃହୀତ ହେଲାଣି । ସାରାପୃଥିବୀର ବିଭିନ୍ନ ସ୍ଥାନରେ ପ୍ରାୟ ଦୁଇଶ ଗୋଟି କେନ୍ଦ୍ର ପ୍ରତିଷ୍ଠା କରାଯାଇ ଏ ଦିଗରେ ବିଧିବଦ୍ଧ ଗବେଷଣା କରାଯାଉଛି ।

ମହାଶୂନ୍ୟ, ସୌରମଣ୍ଡଳ, ବିଶ୍ୱରଶ୍ମି ଆଦି ସମ୍ବନ୍ଧରେ ଅଧିକ ଜ୍ଞାନ ଅର୍ଜ୍ଜନ ପାଇଁ ଆମର ଅତି ପରିଚିତ କୃତ୍ରିମ ଉପଗ୍ରହର ଜନ୍ମ । ଏହି ସମ୍ବତ୍ସରରେ ଯଦି କୌଣସି ଉଦ୍ଭାବନ ଶୀର୍ଷସ୍ଥାନ ଅଧିକାର କରିଥାଏ, ତେବେ ତାହା ହେଉଛି ଏହି କୃତ୍ରିମ ଉପଗ୍ରହର ସୃଷ୍ଟି । ମହାଶୂନ୍ୟ ମଧ୍ୟରେ କୃତ୍ରିମ ଉପଗ୍ରହ ସୃଷ୍ଟି କରି ଭବିଷ୍ୟତର ଗ୍ରହାନ୍ତର ଅଭିଯାନ କେତେଦୂର ଫଳପ୍ରଦ ହେବ ଓ ମହାଶୂନ୍ୟ ମଧ୍ୟରେ ଜୀବନ୍ତ ପ୍ରାଣୀ ଗତାଗତ କରିବା କେତେଦୂର ସମ୍ଭବପର, ସେ ସମ୍ବନ୍ଧରେ ବାସ୍ତବ ଜ୍ଞାନଲାଭ କରିବା ଏହାର ଅନ୍ୟତମ ଉଦ୍ଦେଶ୍ୟ ।

ଆକାଶମଣ୍ଡଳର ଉପରସ୍ତର ସମ୍ବନ୍ଧରେ ଗବେଷଣା କରିବାପାଇଁ ବୈଜ୍ଞାନିକମାନଙ୍କୁ ଏହି ସ୍ପୁଟ୍‌ନିକ ଯେଉଁ ସାହାଯ୍ୟ ପ୍ରଦାନ କରିଛି, ତାହା ଅତୁଳନୀୟ । ସୂର୍ଯ୍ୟଙ୍କର ସୂକ୍ଷ୍ମ ତରଙ୍ଗ ଦୈର୍ଘ୍ୟ ବିଶିଷ୍ଟ ଅଲ ଟ୍ରାଭାୟୋଲେଟ ରଶ୍ମି ବିକିରଣ ସମ୍ବନ୍ଧରେ ଗବେଷଣା କରି ନୂତନ ତଥ୍ୟ ଆବିଷ୍କାର କରିବା ଏହି ସ୍ପୁଟ୍‌ନିକ ସାହାଯ୍ୟରେ ସମ୍ଭବପର ହୋଇଛି । ଏହି ତଥ୍ୟ ପଦାର୍ଥ ବିଜ୍ଞାନ, ଜ୍ୟୋତିଷ ପଦାର୍ଥ ବିଜ୍ଞାନ, ଭୂ-ପଦାର୍ଥ ବିଜ୍ଞାନରେ ଯେଉଁ ଅଭିନବ ଶୃଙ୍ଖଳା ସୃଷ୍ଟି କରିଛି, ତାହା ଅବିସ୍ମରଣୀୟ ।

ଏହି କେତେବର୍ଷ ଧରି ଗବେଷଣାଦ୍ୱାରା ଜଣାପଡ଼ୁଛି ଯେ ସୂର୍ଯ୍ୟ କେବଳ ତାପ ଓ ଆଲୋକ ରଶ୍ମି ବିକିରଣ କରେ ନାହିଁ, ଏହା ଅଲ୍‌ଟ୍ରାଭାୟୋଲେଟ ରଶ୍ମି, ରଞ୍ଜନରଶ୍ମି, ଧାଉଲୋହିତରଶ୍ମି ଆଦି ବହୁ ପ୍ରକାର ରଶ୍ମି ବିକିରଣ କରେ । ଏହି ରଶ୍ମିଗୁଡ଼ିକର ସୃଷ୍ଟି ଓ ବିକିରଣ ଫଳରେ ସୂର୍ଯ୍ୟର ବର୍ଣ୍ଣ ଓ ଛଟାମଣ୍ଡଳରେ କି କି ପରିବର୍ତ୍ତନ ହେଉଛି, ତାହା ଜାଣିବା ପାଇଁ ବହୁଦିନ ଧରି ବୈଜ୍ଞାନିକମାନେ ଚେଷ୍ଟା କରିଆସୁଥିଲେ । ସୂର୍ଯ୍ୟ ଏହି ଯେଉଁସବୁ ରଶ୍ମି ବିକିରଣ କରେ, ସେଗୁଡ଼ିକରୁ ଅଧିକାଂଶ ଆକାଶମଣ୍ଡଳର ଉପରସ୍ତରଦ୍ୱାରା ବିଶୋଷିତ ହୋଇଯାଏ । ଫଳରେ ସେ ସମ୍ବନ୍ଧରେ ଗବେଷଣା କରିବା ପୃଥିବୀ-ପୃଷ୍ଠରେ ସମ୍ଭବପର ହୁଏ ନାହିଁ । ତେଣୁ ଏହିସବୁ ରଶ୍ମି ସମ୍ବନ୍ଧରେ ଗବେଷଣା କରିବାକୁ ହେଲେ ପୃଥିବୀକୁ ଘେରିରହିଥିବା ଆକାଶମଣ୍ଡଳକୁ ପରିତ୍ୟାଗ କରି ମହାଶୂନ୍ୟ ମଧ୍ୟକୁ ଯିବା ଦରକାର । ଏଥିପାଇଁ ପୃଥିବୀ-ପୃଷ୍ଠରୁ ଭିନ୍ନ ଭିନ୍ନ ରକେଟ୍ ଆକାଶର ଉପରମଣ୍ଡଳକୁ ପଠାଯାଇ ଏ ଦିଗରେ ଗବେଷଣା କରାଯାଉଥିଲା । କିନ୍ତୁ ସ୍ପୁଟ୍‌ନିକର ଉଦ୍ଭାବନ ଦିନଠାରୁ ଏହି ଗବେଷଣା ଅଧିକ ସୁବିଧାଜନକ ହୋଇଛି ଓ ମହାଶୂନ୍ୟରେ ବହୁଦିନ ଧରି ସ୍ପୁଟ୍‌ନିକ ରହିବାଦ୍ୱାରା ସେହି ଗବେଷଣାର ଫଳ ଅଧିକ ନିର୍ଭରଯୋଗ୍ୟ ହୋଇପାରିଛି ।

ଏହିସବୁ ଗବେଷଣା ପାଇଁ ରୁଷୀୟମାନଙ୍କର ତୃତୀୟ ସ୍ପୁଟ୍‌ନିକରେ ଯେଉଁସବୁ ଜଟିଳ ବ୍ୟବସ୍ଥା କରାଯାଇଛି, ତାହା ଦେଖିଲେ ଆଶ୍ଚର୍ଯ୍ୟ ନ ହୋଇ ରହିହୁଏ ନାହିଁ ।

ମହାଶୂନ୍ୟରେ ବିଶ୍ୱରଶ୍ମି ସମ୍ବନ୍ଧୀୟ ନାନା ଗବେଷଣା କରିବା ଯେତେ ସୁବିଧାଜନକ, ପୃଥିବୀପୃଷ୍ଠରେ ସେହିସବୁ ଗବେଷଣା କରିବା ସେତେ ସୁବିଧାଜନକ ନୁହେଁ । ତାହାର କାରଣ ହେଉଛି ସେହି ଆକାଶମଣ୍ଡଳ । ମହାଶୂନ୍ୟର ବିଭିନ୍ନ ସ୍ଥାନରୁ ଯେଉଁ ବିଶ୍ୱରଶ୍ମି ପୃଥିବୀ ଆଡ଼କୁ ଆସେ, ସେଥିରୁ ଅଧିକାଂଶ ଆକାଶମଣ୍ଡଳଦ୍ୱାରା ବିଶୋଷିତ ହୁଏ । ତେଣୁ ବିଶ୍ୱରଶ୍ମି ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଗବେଷଣା କରିବାକୁ ହେଲେ ପୃଥିବୀପୃଷ୍ଠସ୍ଥ ଆକାଶମଣ୍ଡଳ ତ୍ୟାଗକରି ମହାଶୂନ୍ୟ ମଧ୍ୟକୁ ଯିବା ଉଚିତ । ତେଣୁ ଏହି ଗବେଷଣା ଦିଗରେ ସ୍ପୁଟ୍‌ନିକ ଯେ ଖୁବ୍ ସାହାଯ୍ୟକାରୀ ହେବ, ଏଥିରେ ସନ୍ଦେହ ନାହିଁ । ପ୍ରମତ୍ତ ସ୍ପୁଟ୍‌ନିକ ସେକେଣ୍ଡକୁ ପାଞ୍ଚ ମାଇଲ ବେଗରେ ଗତି କରୁଥିବାରୁ ପୃଥିବୀପୃଷ୍ଠର ଅକ୍ଷାଂଶ ଉପରେ ଏହା ଖୁବ୍ କମ ସମୟ ଭିତରେ ଉଡ଼ିଯାଏ । ସ୍ପୁଟ୍‌ନିକ ଉଡ଼ିଯିବା ଅବସ୍ଥାରେ ମହାଶୂନ୍ୟରେ ବିଶ୍ୱରଶ୍ମିର ଯେଉଁ ଘନତା ମାପୁଥାଏ, ସେଥିରୁ ବିଭିନ୍ନ ଅକ୍ଷାଂଶର ବିଶ୍ୱରଶ୍ମି ଉପରେ କି ପ୍ରଭାବ, ନିର୍ଦ୍ଧାରଣ କରାଯାଇପାରେ । ବିଶ୍ୱରଶ୍ମିର ଘନତା ମାପିବା ପାଇଁ ସ୍ପୁଟ୍‌ନିକ ଭିତରେ ନାନା ଯାନ୍ତ୍ରିକ କୌଶଳ ଖଞ୍ଜାଯାଇଛି । ଏଥିରେ ଏପରି କୌଶଳ ଅଛି ଯେ, ଗୋଟିଏ ବିଶ୍ୱରଶ୍ମି-କଣିକା ଆସି ଏହି ଯନ୍ତ୍ରରେ ପହଞ୍ଚିଲାକ୍ଷଣି ଏଥିରେ ବିଦ୍ୟୁତ୍ ସ୍ଫୁଲିଙ୍ଗ ଜାତ ହୁଏ ଓ ଏହି ବିଦ୍ୟୁତ୍ ସ୍ଫୁଲିଙ୍ଗରୁ ଆଉ ଏକ ଜଟିଳ ପଦ୍ଧତି ସାହାଯ୍ୟରେ ଏହି ବିଶ୍ୱରଶ୍ମିର ଘନତା ସ୍ଥିର କରାଯାଏ । ସ୍ପୁଟ୍‌ନିକ ବିଶ୍ୱରଶ୍ମିର ଏହି ଯେଉଁ ଘନତା ନିର୍ଣ୍ଣୟ କରେ, ତାହା ସଙ୍ଗେ ସଙ୍ଗେ ବେତାର ଜରିଆରେ ପୃଥିବୀପୃଷ୍ଠକୁ ଚାଲିଆସେ । ବିଶ୍ୱରଶ୍ମିର ଘନତା ମାପିବା ପାଇଁ ସ୍ପୁଟ୍‌ନିକ ଭିତରେ ଏକାଧିକ ବିଭିନ୍ନ ପଦ୍ଧତି ବ୍ୟବହୃତ ହୁଏ । ସେଥିରୁ ଯେଉଁ ଭିନ୍ନ ଭିନ୍ନ ଫଳ ମିଳେ, ସେଗୁଡ଼ିକୁ ପରସ୍ପର ସହିତ ତୁଳନା କରି ସେଥିରୁ ପ୍ରକୃତ ଫଳ ଅଲଗା କରାଯାଏ ।

ମହାଶୂନ୍ୟରେ ଜୀବନ୍ତ ମଣିଷ ବା ପ୍ରାଣୀ ରହିଲେ ସେମାନଙ୍କ ଉପରେ ମହାଶୂନ୍ୟର କି ପ୍ରଭାବ ପଡ଼େ, ତାହା ପରୀକ୍ଷା କରିବାପାଇଁ ବୈଜ୍ଞାନିକମାନେ ବହୁଦିନରୁ ଚେଷ୍ଟା କରି ଆସୁଥିଲେ । କାରଣ ସେମାନଙ୍କର ଏହି ପରୀକ୍ଷା ଉପରେ ନିର୍ଭର କରୁଥିଲା ଆନ୍ତଗ୍ରହଭ୍ରମଣର ଭବିଷ୍ୟତ । ବୈଜ୍ଞାନିକମାନେ ଯେତେ ଚେଷ୍ଟାକରି ମଧ୍ୟ ଏଥିପୂର୍ବରୁ

ମହାଶୂନ୍ୟ ଭିତରକୁ ଯାଇପାରି ନ ଥିଲେ । ତେଣୁ ସେମାନଙ୍କ ପରୀକ୍ଷା କରିବା ଆକାଙ୍‌କ୍ଷା କେବେ ଫଳବତୀ ହୋଇ ନ ଥିଲା !

କିନ୍ତୁ ଯେଉଁଦିନଠାରୁ ଏହି ସ୍ପୁଟ୍‌ନିକ ମହାଶୂନ୍ୟରେ ଘୂରିବା ସମ୍ଭବପର ହେଲା, ବୈଜ୍ଞାନିକମାନେ ଏହି ବିରାଟ ପରୀକ୍ଷାକୁ ସ୍ପୁଟ୍‌ନିକ ସାହାଯ୍ୟରେ କରିବା ପାଇଁ ମନସ୍ଥ କଲେ । ଫଳରେ ରୁଷଦେଶର ବୈଜ୍ଞାନିକମାନେ ପ୍ରଥମ ସ୍ପୁଟ୍‌ନିକ ସୃଷ୍ଟି କରିସାରିବା ପରେ ଯେତେବେଳେ ଦ୍ୱିତୀୟ ସ୍ପୁଟ୍‌ନିକ ସୃଷ୍ଟି କରିବାକୁ ମନସ୍ଥ କଲେ, ସେତେବେଳେ ଏହି ସ୍ପୁଟ୍‌ନିକ ଭିତରେ ଏକ ଜୀବନ୍ତ ପ୍ରାଣୀ ରଖି ସେଇ ଜୀବନ୍ତ ପ୍ରାଣୀ ଉପରେ ମହାଶୂନ୍ୟର କି ପ୍ରଭାବ ପଡ଼େ, ତାହା ପରୀକ୍ଷା କରିବା ସ୍ଥିର କରାଗଲା ।

ଏହି ଉଦ୍ଦେଶ୍ୟର ବଶବର୍ତ୍ତୀ ହୋଇ ସୋଭିଏଟ୍ ବୈଜ୍ଞାନିକମାନେ ଲାଇକା ନାମକ ଏକ କୁକୁରକୁ ସେମାନଙ୍କର ଦ୍ୱିତୀୟ ସ୍ପୁଟ୍‌ନିକ ଭିତରେ ରଖି ମହାଶୂନ୍ୟ ମଧ୍ୟକୁ ଛାଡ଼ିଥିଲେ । ଏହାକୁ ସ୍ପୁଟ୍‌ନିକ ଭିତରେ ଆବଦ୍ଧ ବାୟୁଯୁକ୍ତ ଏକ କୋଠରୀରେ ରଖାଯାଇଥିଲା । ମହାଶୂନ୍ୟ ଭିତରେ ଏହି ପ୍ରାଣୀଟିର କି କି ଶାରୀରିକ ପରିବର୍ତ୍ତନ ହେଉଛି, ତାହା ଜାଣିବାପାଇଁ ସେହି କୋଠରୀ ଭିତରେ ନାନା ଯନ୍ତ୍ରପାତି ଖଞ୍ଜାଯାଇଥିଲା । ସେଥି ସଙ୍ଗେ-ସଙ୍ଗେ କୁକୁରଟି କୋଠରୀ ଭିତରେ ରହିଥିବା ହେତୁ ପ୍ରତି ମୁହୂର୍ତ୍ତରେ ଯେଉଁ ଅମ୍ଳଜାନ ଗ୍ରହଣ କରି ଅଙ୍ଗାରକାମ୍ଳ ପରିତ୍ୟାଗ କରୁଥିଲା ଓ ସେହି ଅଙ୍ଗାର-କାମ୍ଳକୁ ପୁଣି ଅମ୍ଳଜାନରେ ପରିଣତ କରିବାପାଇଁ ଯେଉଁ ସ୍ୱୟଂଚାଳିତ ଯନ୍ତ୍ରଟି ଆବିଷ୍କୃତ ହୋଇଥିଲା ତାହା ମହାଶୂନ୍ୟରେ କିପରି କାର୍ଯ୍ୟ କରିବ, ତାକୁ ପରୀକ୍ଷା କରିବା ମଧ୍ୟ ବୈଜ୍ଞାନିକମାନଙ୍କର ଅନ୍ୟତମ ଉଦ୍ଦେଶ୍ୟ ଥିଲା । ଏଥି ସଙ୍ଗେ ସଙ୍ଗେ ପ୍ରାଣୀଟିକୁ ଖାଇବାକୁ ଦେବା, ତା'ର ମଳମୂତ୍ର ଆଦି ବାହାର କରିନେବା କାମ ଯନ୍ତ୍ରଦ୍ୱାରା କିପରି ସାଧିତ ହୋଇପାରେ, ତାହା ପରୀକ୍ଷା କରିନେବା ମଧ୍ୟ ସ୍ଥିରୀକୃତ ହୋଇଥିଲା । ଏହି ଯେଉଁସବୁ ବିଭିନ୍ନ ପ୍ରକାର ଯନ୍ତ୍ରପାତି ସ୍ପୁଟ୍‌ନିକ ଭିତରେ କାର୍ଯ୍ୟ କରୁଥିଲା ସେଗୁଡ଼ିକ କିପରି ନ୍ୟୂନତମ ବିଦ୍ୟୁତ୍‌ଶକ୍ତି ଖରଚକରି କାର୍ଯ୍ୟ କରିପାରିବ ତାହା ପରୀକ୍ଷା କରିବା ମଧ୍ୟ ଆଉ ଏକ ଉଦ୍ଦେଶ୍ୟ ଥିଲା ।

ସ୍ପୁଟ୍‌ନିକ ଭିତରେ ଥାଇ ପ୍ରାଣୀଟିର ହୃତ୍‌ସ୍ପନ୍ଦନ କିପରି ଚାଲିଛି ଓ ନିଶ୍ୱାସ ପ୍ରଶ୍ୱାସର ଗତି କିପରି, ତାହା ରେଡ଼ିଓ ଟେଲିମିଟରିଂ ଯନ୍ତ୍ର

ସାହାଯ୍ୟରେ ମପାଯାଇ ପୃଥିବୀକୁ ପ୍ରେରିତ ହେଉଥିଲା । ପ୍ରାଣୀଟିର ଶରୀର ଉତ୍ତାପ ଓ ରକ୍ତଚାପରେ କି କି ପରିବର୍ତ୍ତନ ହେଉଛି ଓ ସେଥି ସଙ୍ଗେ ସଙ୍ଗେ ପ୍ରାଣୀଟି ଥିବା କୋଠରୀ ଭିତରେ ଉତ୍ତାପ ଓ ଚାପର କି କି ତାରତମ୍ୟ ହେଉଛି ଲକ୍ଷ୍ୟ କରିବା ଥିଲା ଏକ ପ୍ରଧାନ ଉଦ୍ଦେଶ୍ୟ ।

କୁକୁର ଥିବା କୋଠରୀ ଭିତରେ ଅମ୍ଳଜାନର ପରିମାଣ ଯେପରି ନ କମେ ଓ କୁକୁର ନିଃଶ୍ୱାସରେ ବାହାରୁଥିବା ଜଳୀୟ ବାଷ୍ପର ପରିମାଣ ଯେପରି ଅଯଥା ବୃଦ୍ଧି ନ ପାଏ, ସେଥିପାଇଁ ଏହି କୋଠରୀ ଭିତରେ ନାନା ବନ୍ଦୋବସ୍ତ କରାଯାଇଥିଲା । ସେହି ଆବଦ୍ଧ କୋଠରୀ ଭିତରେ ବାୟୁର ସଞ୍ଚାଳନ ନ ହେଲେ କୁକୁରଟି ଅସ୍ୱସ୍ତି ବୋଧକରି ଅସ୍ଥିର ହୋଇପଡ଼ିବ ଓ ପରୀକ୍ଷାରେ ନାନା ବ୍ୟାଘାତ ଘଟାଇବ, ସେ ବିଷୟରେ ସେହି କୋଠରୀରେ ଆପେ ଆପେ ବାୟୁ ସଞ୍ଚାଳିତ ହେବାପାଇଁ ନାନା ବନ୍ଦୋବସ୍ତ କରାଯାଇଥିଲା । ସେହି କୋଠରୀକୁ ମହାଶୂନ୍ୟ ଭିତରେ ଉଷ୍ମ ରଖିବା ପାଇଁ ଏକ ପ୍ରକାର ତାପ-ଉତ୍ପାଦକ ଯନ୍ତ୍ର ବ୍ୟବହୃତ ହୋଇଥିଲା ।

ସ୍ପୁଟ୍‌ନିକ୍ ଭିତରେ କୁକୁରଟିକୁ ପଠାଇବା ପୂର୍ବରୁ ତାକୁ ବହୁଦିନ ଧରି ଯେଉଁ ଟ୍ରେନିଂ ଦିଆଯାଇଥିଲା, ଶୁଣିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । କୁକୁରଟିକୁ ଯଦି ଉପଯୁକ୍ତ ଟ୍ରେନିଂ ଦିଆ ନ ଯାଏ ଓ ସେ ସ୍ପୁଟ୍‌ନିକ୍ ଭିତରେ ଥାଇ ନିଜର ଅସ୍ଥିରତା ହେତୁ ଯଦି ଗୋଳମାଳ ସୃଷ୍ଟି କରେ, ତେବେ କୁକୁର ଉପରେ ଯେ ମହାଶୂନ୍ୟର ପ୍ରଭାବ ଖାଲି ପରୀକ୍ଷା କରାଯାଇ ପାରିବନି ତା ନୁହେଁ, କୁକୁରର ଅସ୍ଥିରତା ହେତୁ ସ୍ପୁଟ୍‌ନିକ୍‌ର ଅନ୍ୟାନ୍ୟ ସୂକ୍ଷ୍ମ ଯନ୍ତ୍ରମାନ ଖରାପ ହୋଇଯିବା ସମ୍ଭାବନା । ଏଥିପାଇଁ ସ୍ପୁଟ୍‌ନିକ୍ ଭିତରେ ଯିବାପାଇଁ ଲାଇକାକୁ ବହୁଦିନ ଧରି ଟ୍ରେନିଂ ନେବାକୁ ପଡ଼ିଥିଲା । ଗୋଟିଏ ବିଶିଷ୍ଟ ପୋଷାକ ପିନ୍ଧାଇ କୁକୁରଟି ଏକାଦିକ୍ରମେ ବହୁଦିନ ଧରି କିପରି ଏକ ଆବଦ୍ଧ କୋଠରୀଭିତରେ ରହି ପାରିବ, ତାହା ବହୁଦିନ ଧରି ଲାଇକାକୁ ଶିଖାଇ ଦିଆଯାଇଥିଲା ।

ଖାଲି ସେତିକି ନୁହେଁ, କୁକୁର ଶରୀରର ବିଭିନ୍ନ ସ୍ଥାନରେ ନାନା ଯନ୍ତ୍ରପାତି ଲଗାଇ କୁକୁରର ଶାରୀରିକ ଅବସ୍ଥା ମାପିବା ପାଇଁ ଯେଉଁସବୁ ବନ୍ଦୋବସ୍ତ କରାଯାଇଥିଲା ଓ କୁକୁର ଯେପରି ସ୍ପୁଟ୍‌ନିକ୍ ଭିତରେ ଅସ୍ଥିରତା ପ୍ରକାଶ କରି ସେଗୁଡ଼ିକୁ ନଷ୍ଟ କରି ନ ପକାଏ, ସେଥିପାଇଁ କୁକୁରଟିକୁ

ଯଥେଷ୍ଟ ଅଭ୍ୟସ୍ତ କରାଯାଇଥିଲା । ସ୍ପୁଟ୍ନିକ୍ ପୃଥିବୀ ଛାଡ଼ିବା ସମୟରେ ସ୍ପୁଟ୍ନିକ ଭିତରେ ଯେଉଁ କମ୍ପନ ସୃଷ୍ଟିହୁଏ, ସେହି କମ୍ପନକୁ କାଳେ କୁକୁରଟି ସହ୍ୟ କରି ନ ପାରି ମରିଯିବ ସେଥିପାଇଁ କୁକୁରଟିକୁ ଏଥିପୂର୍ବରୁ ଗବେଷଣାଗାରରେ ସେହିଭଳି ଏକ କମ୍ପନ ସହିତ ଅଭ୍ୟସ୍ତ କରାଯାଇଥିଲା । ସପ୍ତାହ ସପ୍ତାହ ଧରି ଧୀରସ୍ଥିର ଭାବରେ ରହିବା ପାଇଁ କୁକୁରକୁ ଟ୍ରେନିଂ ଦିଆଯିବା ପରେ ସେ ଯେପରି ଭାବରେ ଅଭ୍ୟସ୍ତ ହୋଇପଡ଼ିଥିଲା, ଯେ କେହି ଲୋକ ଦେଖିଲେ ଆଶ୍ଚର୍ଯ୍ୟ ନ ହୋଇ ରହି ପାରିବ ନାହିଁ । କୁକୁରଟିକୁ ମୂଳରୁ ଏହି ସବୁ ଟ୍ରେନିଂ ଯଦି ଦିଆଯାଇ ନ ଥାନ୍ତା, ତେବେ କୁକୁର ଉପରେ ମହାଶୂନ୍ୟର ପ୍ରଭାବ ପରୀକ୍ଷା କରିବା ଅସମ୍ଭବ ହୋଇ-ପଡ଼ିଥାନ୍ତା । ଜୀବନ୍ତ ପ୍ରାଣୀ ଉପରେ ଆକାଶର ଉପରସ୍ତରରେ ପହଞ୍ଚୁଥିବା ବିଶ୍ୱରଶ୍ମିର କି ପ୍ରଭାବ, ଆଗରୁ ସୋଭିଏଟ୍ ଇଉନିୟନରେ ରକେଟ୍ ସାହାଯ୍ୟରେ ଶତାଧିକ ମାଇଲ ଉଚ୍ଚ ଆକାଶ ମଧ୍ୟକୁ ପ୍ରାଣୀମାନଙ୍କୁ ପଠାଇ ପରୀକ୍ଷା କରାଯାଇଥିଲେ ମଧ୍ୟ ସ୍ପୁଟ୍ନିକ ଭିତରେ ଥାଇ ଲାଇକା ଯେଉଁ ତଥ୍ୟ-ସବୁ ପ୍ରଦାନ କଲା, ତାହା ସବୁଠାରୁ ଅଧିକ ନିର୍ଭରଯୋଗ୍ୟ ।

ସ୍ପୁଟ୍ନିକ ଭିତରେ ଲାଇକାକୁ ପଠାଇ ସୋଭିଏଟ୍ ବୈଜ୍ଞାନିକ-ମାନେ ଯେଉଁସବୁ ତଥ୍ୟ ସଂଗ୍ରହ କରିଥିଲେ, ତାହା ଏବେ ସୋଭିଏଟ୍ ବୈଜ୍ଞାନିକମାନଙ୍କଦ୍ୱାରା ପରୀକ୍ଷିତ ହୋଇ ନୂତନ ନୂତନ ତଥ୍ୟର ସନ୍ଧାନ ଦେଉଛି । ପୃଥିବୀପୃଷ୍ଠରୁ ଅତି ବେଗରେ ଯିବାଦ୍ୱାରା ଶରୀର ଉପରେ ଯେଉଁ ପ୍ରଭାବ ପଡ଼େ, ତା'କୁ ସହ୍ୟକରି ବଞ୍ଚିରହିବା ଏକ ସମୟରେ ଅସମ୍ଭବ ବୋଲି ଧରାଯାଉଥିଲା । କିନ୍ତୁ ଲାଇକା ଉପରେ ପରୀକ୍ଷା କରି ଏହା ନିଶ୍ଚିତ ଭାବରେ ପ୍ରମାଣିତ ହୋଇଛି ଯେ ଆବଦ୍ଧ କୋଠରୀ ଭିତରେ ଥାଇ ଏହି ବିରାଟ ବେଗର ପ୍ରଭାବକୁ ସହ୍ୟ କରିବା ଜୀବନ୍ତ ପ୍ରାଣୀ ପକ୍ଷରେ ବିଶେଷ କିଛି କଷ୍ଟକର ନୁହେଁ । ସ୍ପୁଟ୍ନିକ୍ରୁ ଆସିଥିବା ଫଳାଫଳରୁ ଏହା ସ୍ପଷ୍ଟ ଜଣାପଡ଼ୁଛି ଯେ ପୃଥିବୀରୁ ବିରାଟ ବେଗରେ ଯାଇ ମହାଶୂନ୍ୟରେ ଘୂରିଲେ ମଧ୍ୟ ମଣିଷର ଶରୀରରେ ବିଶେଷ କିଛି କଷ୍ଟ ହେବ ନାହିଁ ।

ଏହା ନିଃସନ୍ଦେହରେ କୁହାଯାଇପାରେ ଯେ କୁକୁରଟିଏ ମହା-ଶୂନ୍ୟକୁ ପଠାଇ ସୋଭିଏଟ୍ ବୈଜ୍ଞାନିକମାନେ ଯେଉଁ ତଥ୍ୟ ଓ ଫଳାଫଳ ସଂଗ୍ରହ କରିଛନ୍ତି, ତାହା ମହାଶୂନ୍ୟ ମଧ୍ୟରେ ଆନ୍ତର୍ଗ୍ରହ ଭ୍ରମଣରେ

ଯାଉଥିବା ଯାତ୍ରୀମାନଙ୍କର ନାନା ଉପକାରରେ ଯେ ଆସିବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ମହାଶୂନ୍ୟରେ ଯାତ୍ରା କଲାବେଳେ ମହାଶୂନ୍ୟଯାନର ବର୍ଦ୍ଧିତ ବେଗ, ବିଶ୍ୱରଶ୍ମିର ପ୍ରଭାବ ସମ୍ବନ୍ଧରେ ଯେଉଁ ଅଯଥା ଭୟ ଓ ଆତଙ୍କ ଥିଲା, ତାହା ଅନ୍ତତଃ ଏହି ପରୀକ୍ଷାରୁ ଅନେକାଂଶରେ ଦୂର ହୋଇଯାଇଛି । ମହାଶୂନ୍ୟ ବୋଇତରେ ବସି ମହାଶୂନ୍ୟ ଭିତରେ ଗୋଟିଏ ଗ୍ରହରୁ ଅନ୍ୟ ଗ୍ରହକୁ ଯିବା ପୂର୍ବପରି କଳ୍ପନାର ବିଷୟବସ୍ତୁ ହୋଇ ରହିବ ନାହିଁ ବୋଲି ବୈଜ୍ଞାନିକମାନେ ବିଶ୍ୱାସ କରନ୍ତି । ପୃଥିବୀର ଶକ୍ତିଶାଳୀ ରାଷ୍ଟ୍ରମାନେ ବର୍ତ୍ତମାନ ଯେପରି ଭାବରେ ଏହି ମହାଶୂନ୍ୟ ଭ୍ରମଣ ଓ ଗ୍ରହାନ୍ତର ଅଭିଯାନଆଡ଼କୁ ଆକୃଷ୍ଟ ହୋଇ ପଡ଼ିଲେଣି, କିଏ କହିପାରିବ ସେମାନଙ୍କର ଦୃଷ୍ଟି ପୂର୍ବପରି ପରମାଣୁ ଓ ହାଇଡ୍ରୋଜେନ୍ ବୋମା ଆଦି ମାରଣାସ୍ତ୍ର ଆଡ଼ୁ ଧୀରେ ଧୀରେ ଅପସରି ନ ଆସିଛି ବୋଲି । ପରସ୍ପର ଭିତରେ ଯୁଦ୍ଧ କରିବା ମନୋବୃତ୍ତି ଯଦି ଏହିଭଳି ଭାବରେ ଶାନ୍ତିପୂର୍ଣ୍ଣ ଆନ୍ତର୍ଗ୍ରହ ଭ୍ରମଣ ଆଡ଼କୁ ପରିବର୍ତ୍ତିତ ହୋଇଯାଏ, ତେବେ ଆମକୁ ପୁରାପୁରି ସ୍ୱୀକାର କରିବାକୁ ପଡ଼ିବ ଯେ, ସେମାନଙ୍କର ଏହି ପରିବର୍ତ୍ତନ ମୂଳରେ ରହିଛି ଶାନ୍ତିର ପ୍ରତୀକ ସ୍ପୁଟ୍‌ନିକ୍ ।...”

“ସାର୍, ଏହି କୃତ୍ରିମ ଉପଗ୍ରହକୁ ଭବିଷ୍ୟତ ଯୁଦ୍ଧ ବିଗ୍ରହରେ ଲଗାଇବା କ’ଣ ସମ୍ଭବପର ନୁହେଁ ? ଏହା ଯଦି ସମ୍ଭବପର ହୁଏ, ତେବେ ଏହା ପୃଥିବୀପ୍ରତି ଯେ ନିଶ୍ଚୟ ବିପଜ୍ଜନକ ହେବ ଏଥିରେ ସନ୍ଦେହ ନାହିଁ ।”

ଛାତ୍ରମାନଙ୍କ ଆଶଙ୍କାର ଯଥାଯଥ ଉତ୍ତର ଦେବା ବର୍ତ୍ତମାନ ସମ୍ଭବପର ନ ହେଲେହେଁ ଏହି ଆଶଙ୍କାଟିକୁ ପୁଙ୍ଖାନୁପୁଙ୍ଖରୂପେ ଆଲୋଚନା କରାଯାଇ-ପାରେ । କୃତ୍ରିମ ଉପଗ୍ରହ ପ୍ରତି ଦେଢ଼ ଘଣ୍ଟାରେ ଥରେ ଲେଖାଏଁ ପୃଥିବୀ ଚାରିପାଖରେ ଘୂରି ଆସୁଥିବାରୁ ଏହା ସାହାଯ୍ୟରେ ବିଭିନ୍ନ ରାଷ୍ଟ୍ରର ଫଟୋ ଉଠାଇବା ସମ୍ଭବପର । ଏହା ଉପରକୁ ପରମାଣୁ ଓ ହାଇଡ୍ରୋଜେନ ବୋମା ଆଦି ବୋହିନେଇ ସେଠାରୁ ମନଇଚ୍ଛା ଯେ କୌଣସି ରାଷ୍ଟ୍ର ଉପରେ ବର୍ଷଣ କରାଯାଇପାରେ ବୋଲି ଅନେକେ ଭାବିପାରନ୍ତି ।

କିନ୍ତୁ ଏହି ପ୍ରଶ୍ନଟିକୁ ଆହୁରି ଗଭୀର ଭାବରେ ଆଲୋଚନା କଲେ ଏହା ମୂଳରେ ସେସବୁ ଉଦ୍ଦେଶ୍ୟ ନାହିଁ ବୋଲି ସ୍ପଷ୍ଟ ପ୍ରତୀୟମାନ ହୁଏ ।

ଆଜିକାଲି ଯେଉଁ ଆନ୍ତର୍ମହାଦେଶୀୟ ବାଲିଷ୍ଟିକ୍ ମିଜାଇଲ ଆବିଷ୍କାର ହୋଇଛି, ସେଭଳି ଏକ ଉପାୟ ଥାଉଁ ଥାଉଁ କୃତ୍ରିମ ଉପଗ୍ରହ ସାହାଯ୍ୟରେ କୌଣସି ଦେଶ ଉପରେ ପରମାଣୁ ବୋମା ଆଦି ନିକ୍ଷେପ କରିବା ଆବଶ୍ୟକ ହୋଇ ନ ପାରେ । କାରଣ ଏହି ବାଲିଷ୍ଟିକ୍ ମିଜାଇଲ୍‌ର କ୍ଷେପଣ ନୀତି ଏତେ ନିର୍ଭୁଲ ଓ ଏହା ସାମାନ୍ୟ କେଇ ମିନିଟ୍ ଭିତରେ ଗୋଟିଏ ଦେଶରୁ ବୋମା ବୋହି ନେଇ ଅନ୍ୟଦେଶ ଉପରେ ଏତେ ଦକ୍ଷତାର ସହିତ ପକାଇପାରେ ଯେ ଏହି ବ୍ୟବସ୍ଥା ଥାଉଁ ଥାଉଁ କୃତ୍ରିମ ଉପଗ୍ରହର ସାହାଯ୍ୟ ନେବା ଅଳ୍ପ ବୁଦ୍ଧିର ପରିଚୟସୂଚକ ଛଡ଼ା ଅନ୍ୟ କିଛି ହେବନି । ପୁନଶ୍ଚ ବାଲିଷ୍ଟିକ୍ ମିଜାଇଲ୍‌ର ଶକ୍ତି ଓ ପରାକ୍ରମ ଏତେ ବେଶି ଯେ ତାହା ସାହାଯ୍ୟରେ ନିଆଯାଉଥିବା ପରମାଣୁ ବା ହାଇଡ୍ରୋଜେନ୍ ବୋମାକୁ ଧ୍ୱଂସ କରିବା ବା ତାହାର ଦିଗ ପରିବର୍ତ୍ତନ କରିବା ଏପର୍ଯ୍ୟନ୍ତ ସମ୍ଭବପର ହୋଇନି । ତେଣୁ ସାମରିକ ଦୃଷ୍ଟିକୋଣରୁ ଆନ୍ତର୍ମହାଦେଶୀୟ ବାଲିଷ୍ଟିକ୍ ମିଜାଇଲର ଗୁରୁତ୍ୱ ତୁଳନାରେ ଏହି କୃତ୍ରିମ ଉପଗ୍ରହର ଗୁରୁତ୍ୱ ଯେ କିଛି ନୁହେଁ, ତାହା ସମସ୍ତେ ଉପଲବ୍ଧି କରିବା ଉଚିତ । ଏହି କୃତ୍ରିମ ଉପଗ୍ରହ ଯେ ପୃଥିବୀର ଶାନ୍ତିର ଅଗ୍ରଦୂତ ଓ ଏହା ସାହାଯ୍ୟରେ ଆନ୍ତର୍ଗ୍ରହ ଅଭିଯାନ କରି ସାରା ମଣିଷସମାଜ ବିଶ୍ୱର ଅନ୍ୟାନ୍ୟ ଗ୍ରହ ଉପଗ୍ରହ ଉପରେ ଯେ ଅଧିକାର ହାସଲ କରିପାରିବ, ଏହା ସମସ୍ତଙ୍କ ମନରେ ସ୍ଥାନ ପାଇବା ଉଚିତ । କୃତ୍ରିମ ଉପଗ୍ରହର ସୃଷ୍ଟିରୁ ଅଯଥା ଭୟଭୀତ ହୋଇ ମାନବସମାଜର ଏହି ଅଭୂତପୂର୍ବ କୃତକାର୍ଯ୍ୟତାରେ ଆହ୍ଲାଦିତ ହେବାରୁ ବଞ୍ଚିତ ହେବା ବିଜ୍ଞତାର ପରିଚୟସୂଚକ ନୁହେଁ ।

ବିଭିନ୍ନ ବୈଜ୍ଞାନିକ ଦୃଷ୍ଟିକୋଣରୁ ଦେଖିଲେ କୃତ୍ରିମ ଉପଗ୍ରହର ପ୍ରକୃତ ଉଦ୍ଦେଶ୍ୟ କେବେ ସାମରିକ ବିପ୍ରାତ ହୋଇ ନ ପାରେ । ଏହାର ପ୍ରକୃତ ଉଦ୍ଦେଶ୍ୟ ହେଉଛି ମହାଶୂନ୍ୟ ସମ୍ବନ୍ଧରେ ଅଧିକ ଜ୍ଞାନ ଅର୍ଜନ କରିବା ଓ ସେହି ଜ୍ଞାନ ସାହାଯ୍ୟରେ ଆନ୍ତର୍ଗ୍ରହ ଭ୍ରମଣ ଦିଗରେ ଆଗେଇଯିବା । ମଣିଷ ବହୁ ପୁରାକାଳରୁ ଅନ୍ୟ ଗ୍ରହ ଉପଗ୍ରହକୁ ଯିବାପାଇଁ ଯେଉଁ ଆଶା ପୋଷଣ କରିଆସିଛି, ସେହି ଆଶା ଫଳବତୀ ହେବାର ପ୍ରଥମ ଲକ୍ଷଣ ଏହି କୃତ୍ରିମ ଉପଗ୍ରହ ବୋଲି କହିଲେ ଅତ୍ୟୁକ୍ତି ହେବନି ।



( ଗୃର )



ବେଥୁନ କଲେଜରେ ସୁପ୍ରଶସ୍ତ ବକ୍ତୃତା-ପ୍ରାଙ୍ଗଣ । ବିଭିନ୍ନ ପ୍ରକାର ଆଲୋକବର୍ତ୍ତି ଓ ସାଜସଜ୍ଜାରେ ପ୍ରାଙ୍ଗଣଟି ହସିଉଠିଛି, ଠିକ୍ ଋତୁରାଜ ବସନ୍ତର ଆଗମନରେ ପ୍ରକୃତିରାଣୀ ଧରାପୃଷ୍ଠରେ ଯେପରି ହସିଉଠେ । ପ୍ରାଙ୍ଗଣଟି ଛାତ୍ରୀ ଓ ଭଦ୍ରମହିଳାମାନଙ୍କ ଦ୍ୱାରା ଭରପୂର, ସମସ୍ତେ ଦେଶର ଏହି ଶ୍ରେଷ୍ଠ ବିଜ୍ଞାନପ୍ରବରଙ୍କ ମୁଖରୁ ପୃଥିବୀର ସବୁଠାରୁ ଆଶ୍ଚର୍ଯ୍ୟତମ ଉଦ୍ଭାବନ ସମ୍ବନ୍ଧରେ ଶୁଣିବା ପାଇଁ ପାଗଳ ହୋଇ ଦୌଡ଼ି ଆସିଛନ୍ତି । ଶ୍ରୋତାମାନଙ୍କୁ ଆହୁରି ଅଧିକ ସଂଖ୍ୟାରେ ଆକୃଷ୍ଟ କରିବା ପାଇଁ

କଲେଜରେ ଲାଉଡ଼ସ୍ପିକର ସାହାଯ୍ୟରେ ନାନା ଚଳଚ୍ଚିତ୍ର ସଙ୍ଗୀତ ମଧ୍ୟ ଗାନ କରାଯାଉଥାଏ । ମିସ୍ ସେନ୍ ଅଧ୍ୟାପକ ପଟ୍ଟନାୟକଙ୍କୁ ସ୍ୱାଗତ କରିବାପାଇଁ ଯେତେ ପ୍ରକାର ଆଡ଼ମ୍ବରପୂର୍ଣ୍ଣ ଆୟୋଜନ କରିବାକୁ ପଡ଼ିପାରେ ନ କରି ଛାଡ଼ି ନ ଥାନ୍ତି । ଅଧ୍ୟାପକ ପଟ୍ଟନାୟକ କଲେଜର ଗେଟ୍ ସାମନାରେ ପହଞ୍ଚିବାକ୍ଷଣି ଏସବୁ ଆଡ଼ମ୍ବର ଦେଖି ଖୁସି ହେବା ପରିବର୍ତ୍ତିରେ ସାମାନ୍ୟ ବ୍ୟସ୍ତ ହେଲାଭଳି ଜଣାପଡ଼ୁଥାନ୍ତି । ଗେଟ୍ ପାଖରେ ମିସ୍ ସେନ୍ ଓ କଲେଜର ଅନ୍ୟ ଅଧ୍ୟାପିକାମାନେ ତାଙ୍କୁ ସ୍ୱାଗତ କଲାବେଳେ ମିସ୍ ସେନ୍ଙ୍କୁ ଲକ୍ଷ୍ୟକରି ଡକ୍ଟର ପଟ୍ଟନାୟକ କହିଲେ, "ଆପଣଙ୍କର ଏହି ସ୍ୱାଗତ ଆଡ଼ମ୍ବର ଦେଖି ମୁଁ ଖୁସି ହେବା ପରିବର୍ତ୍ତିରେ ଦୁଃଖିତ ହେଉଛି ମିସ୍ ସେନ୍ । ଏତେ ଜୋରରେ ଏହି ଯେଉଁ ଲାଉଡ଼ସ୍ପିକର ଗୁଡ଼ିକ ବାଜୁଛି, ମଣିଷର ଶରୀର ଉପରେ ଏହାର କ୍ଷତିର ପ୍ରଭାବ ଆପଣ ବୋଧହୁଏ ଜାଣିନାହାନ୍ତି, ଜାଣିଥିଲେ ହୁଏତ ଆପଣ ନିଜର ତଥା ଅନ୍ୟ-ମାନଙ୍କର ସ୍ୱାସ୍ଥ୍ୟର ଏଭଳି କ୍ଷତି ଘଟାଇବାକୁ ଆଗେଇ ଆସି ନ ଥାନ୍ତେ ।"

ଅଧ୍ୟାପକ ପଟ୍ଟନାୟକଙ୍କ ମୁଖରୁ ଏଭଳି ଖେଦୋକ୍ତି ଶୁଣି ମିସ୍ ସେନ୍ ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ କିଂକର୍ତ୍ତବ୍ୟବିମୂଢ଼ା ହୋଇପଡ଼ିଲେ । ଲାଉଡ଼ସ୍ପିକର ବାଜିଲେ କ୍ଷତି କ'ଣ ହେଲା, ସେ ଜାଣି ନ ପାରି ଡକ୍ଟର ପଟ୍ଟନାୟକଙ୍କ ମୁହଁକୁ ବଲ ବଲ କରି ଅନାଇ ରହିଲେ । ଡକ୍ଟର ପଟ୍ଟନାୟକ ଈଷତ୍ ହସି କହିଲେ, "କଲିକତା ସହରରେ ଦୁର୍ଗାପୂଜା, କାଳୀପୂଜା ଆଦିରେ ଲାଉଡ଼ସ୍ପିକର ଦିନ ରାତି ଅନବରତ ବାଜିବା ଫଳରେ ଲୋକମାନଙ୍କର ସ୍ୱାସ୍ଥ୍ୟ ପକ୍ଷରେ କି କ୍ଷତି ହୁଏ, ଆପଣ ଜାଣି ନାହାନ୍ତି ବୋଧହୁଏ ? ଜାଣିଥିଲେ ଆଜି ପୁଣି ଲାଉଡ଼-ସ୍ପିକରରେ ଗୀତ ବଜାଇ ଅଧିକ ଲୋକଙ୍କୁ ଆହୁରି ରୋଗଗ୍ରସ୍ତ କରିବାକୁ ଚେଷ୍ଟା କରି ନ ଥାନ୍ତେ । ଆଧୁନିକ ବୈଜ୍ଞାନିକମାନେ ଏହା ପ୍ରତିପାଦନ କରିଛନ୍ତି ଯେ ଜଣେ ଲୋକ କ୍ରମାଗତ ଆଠ ଘଣ୍ଟା ଧରି ଯଦି ଲାଉଡ଼ସ୍ପିକରରେ ବଜା-ହେଉଥିବା ଗୀତକୁ ଶୁଣେ, ତେବେ ତା'ର ଶ୍ରବଣଶକ୍ତି ନିଶ୍ଚୟ ହ୍ରାସ ପାଇବ । ବାରଘଣ୍ଟା ଧରି ବିଭିନ୍ନ ଲାଉଡ଼ସ୍ପିକରରୁ ଆସୁଥିବା ଗୀତକୁ ଶୁଣିଲେ ମସ୍ତିଷ୍କରେ ନାନା ଗୋଳମାଳ ଦେଖାଦିଏ, ନିଦ୍ରାହୀନତା, ପେଟ ଗୋଳ-ମାଳ, ଅଶାନ୍ତି, ମୁଣ୍ଡବ୍ୟଥା ଆଦି ବହୁ ପ୍ରକାର ରୋଗ ଏଥିସଙ୍ଗେ ଆକ୍ରମଣ କରେ । ଏବେ ଆମେରିକାରୁ ଦଳେ ବିଶେଷଜ୍ଞ ଦୁର୍ଗାପୂଜା ସମୟରେ

କଲିକତା ସହର ବୁଲି ଲାଉଡ୍‌ସ୍ପିକରର ଏତାଦୃଶ ବ୍ୟବହାର ବିରୁଦ୍ଧରେ ପ୍ରବଳ ମତ ପ୍ରଦାନ କରିଛନ୍ତି । ସେମାନଙ୍କ ମତରେ ଏଭଳି ପର୍ବପର୍ବାଣିରେ ପୋଲିସ ଲାଇସେନସ ଦେବା ପୂର୍ବରୁ ଏହି ଲାଉଡ୍‌ସ୍ପିକରଗୁଡ଼ିକ କେତେ ଜୋରରେ ବାଜିବ ତା'ର କଟକଣା ଜାରି କରିବା ଉଚିତ୍ ? ଆପଣମାନେ ଯେତେ ଜୋରରେ ବଜାଉଛନ୍ତି, ସେତେ ଜୋରରେ ବଜାଇଲେ ପୋଲିସ ଆଇନ ଅନୁଯାୟୀ ଆପଣମାନେ ଅପରାଧୀ ଭାବରେ ଧରା ହେବା ଉଚିତ୍ ।"

ପୋଲିସ ଧରିବା ଆଗରୁ ଆପଣ ଯେ, ଆମକୁ ଧରିପାରିଲେ, ଏହାହିଁ ଆମର ସୌଭାଗ୍ୟ ଡକ୍‌ଟର ପଟ୍ଟନାୟକ । ଆମ୍ଭେମାନେ ଲଜ୍ଜିତ ଏହି ଡାକବାଜି ଯନ୍ତ୍ରର ଏତାଦୃଶ ବ୍ୟବହାର ପାଇଁ । ଭବିଷ୍ୟତରେ ଏହାର ଏଭଳି ବ୍ୟବହାର ଯେ ଆଉ ହେବନି, ମୁଁ ଏବେଠାରୁ ନିର୍ଭର ପ୍ରତିଶ୍ରୁତି ଦେଇ-ପାରେ ।" ହସି ହସି ନିଜର ମାଦକତାଭରା ଆଖି ଦୁଇଟିକୁ ନଚାଇ କହିଲେ ମିସ୍ ସେନ୍ ।

ଯଥାସମୟରେ ସଭାକାର୍ଯ୍ୟ ଆରମ୍ଭ ହେଲା । ବକ୍ତୃତା ମଞ୍ଚ-ଉପରେ ଅଧ୍ୟାପକ ପଟ୍ଟନାୟକ ଓ ମିସ୍ ସେନ୍ ପାଖକୁପାଖ ଲାଗାଲାଗି ହୋଇ ବସିଥାନ୍ତି । ଅଧ୍ୟାପକ ପଟ୍ଟନାୟକଙ୍କୁ ଶ୍ରୋତାମାନଙ୍କ ସହିତ ପରିଚିତ କରାଇଦେବା ପରେ ଭାଷଣ ଦେବାପାଇଁ ଅନୁରୋଧ କରି ପ୍ରିନ୍‌ସିପାଲ ମିସ୍ ସେନ୍ ବସିପଡ଼ିଲେ । ଅଧ୍ୟାପକ ପଟ୍ଟନାୟକ ଭାଷଣ ଦେବାପାଇଁ ଠିଆ ହୁଅନ୍ତେ ଘନ ଘନ କରତାଳିରେ ସଭାକକ୍ଷ କମ୍ପିଉଠିଲା ।

"........୧୯୪୫ ମସିହା ଅଗଷ୍ଟ ମାସ ୬ ତାରିଖ ବିଜ୍ଞାନ-ଇତିହାସରେ ଏକ ଚିରସ୍ମରଣୀୟ ଦିବସ ଭାବରେ ପରିଗଣିତ ହୁଏ । ଏହି ଦିବସରେ ପୃଥିବୀ ପଦାର୍ପଣ କରିଥିଲା ଏକ ନୂତନ ଯୁଗରେ ଯେଉଁ ଯୁଗ ଆଜି ପରମାଣୁ ଯୁଗ ଭାବରେ ଖ୍ୟାତ । ବୈଜ୍ଞାନିକମାନେ ଆଶା କରିଥିଲେ ଯେ ଏହି ପରମାଣୁ ଯୁଗରେ ସେମାନେ ପରମାଣୁ ଶକ୍ତିକୁ ନାନା କାର୍ଯ୍ୟରେ ଲଗାଇ ମାନବ-ଇତିହାସରେ ସୃଷ୍ଟି କରିବେ ଏକ ନୂତନ ଅଧ୍ୟାୟ । ପୃଥିବୀ-ପୃଷ୍ଠରେ ଏହି ନୂତନ ଯୁଗର ଅଖଣ୍ଡ ରାଜୁତି ବହୁଦିନ ଧରି ଚାଲିବ ବୋଲି ସେମାନେ ବଡ଼ ଆଶା ବାନ୍ଧିଥିଲେ ।

କିନ୍ତୁ ହଠାତ୍ ଏହି ପରମାଣୁ ଯୁଗକୁ ପଛରେ ପକାଇ ଦେଇ ଏହି ପୃଥିବୀପୃଷ୍ଠରେ ଦେଖାଦେଲା ଆଉ ଏକ ନୂତନ ଯୁଗ—ଗ୍ରହଗ୍ରହାନ୍ତର

ଯୁଗ । ଗତ ଅକ୍‌ଟୋବର ମାସ ୪ ତାରିଖ ଦିନ ସୋଭିଏଟ୍ ରୁଷିଆ ସାରା ପୃଥିବୀକୁ ଚମକିତ କରି ଏକ ନୂତନ ଯୁଗର ଭିତ୍ତିସ୍ଥାପନ କଲା ଏହି ଧରାପୃଷ୍ଠରେ । ସେହି ଯୁଗର ପ୍ରତୀକ ସ୍ୱରୂପ ମହାଶୂନ୍ୟ ମଧ୍ୟରେ ସେହିଦିନ ଦେଖାଦେଲା ପୃଥିବୀର ସର୍ବପ୍ରଥମ କୃତ୍ରିମ ଉପଗ୍ରହ, ସ୍ପୁଟ୍‌ନିକ ବା ବାଳଚନ୍ଦ୍ର । ସେହି ଗୋଟିକ କୃତ୍ରିମ ଉପଗ୍ରହରେ ସୋଭିଏଟ୍ ରୁଷିଆ ସନ୍ତୁଷ୍ଟ ହୋଇ ରହିପାରିଲା ନାହିଁ । ପ୍ରଥମ ଉପଗ୍ରହ ସୃଷ୍ଟି ହେବାର ଠିକ ୨୯ ଦିନ ବା ଏକ ଚାନ୍ଦ୍ରମାସ ପରେ ଅର୍ଥାତ୍ ଗତ ନଭେମ୍ବର ମାସ ୩ ତାରିଖ ଦିନ ଆଉ ଏକ କୃତ୍ରିମ ଉପଗ୍ରହ ସୃଷ୍ଟିକଲା ସେହି ମହାଶୂନ୍ୟ ଭିତରେ । ଏହି ଦୁଇଟି କୃତ୍ରିମ ଉପଗ୍ରହ ବା ରୁଷ ଭାଷାରେ ଯାହାକୁ କହନ୍ତି ସ୍ପୁଟ୍‌ନିକ ସୃଷ୍ଟିକରି ସୋଭିଏଟ୍ ରୁଷିଆ ସାରା ପୃଥିବୀକୁ ଚମତ୍କୃତ କରିବା ସଙ୍ଗେ ସଙ୍ଗେ ନିଜ ଉନ୍ନତ ବିଜ୍ଞାନର ଅପୂର୍ବ ପରାକାଷ୍ଠା ଏହି ପୃଥିବୀପୃଷ୍ଠରେ ପ୍ରତିଷ୍ଠା କରିପାରିଲା ।

ସୋଭିଏଟ୍ ରୁଷିଆ ଏହି ଯେଉଁ ଦୁଇଟି ସ୍ପୁଟ୍‌ନିକ ସୃଷ୍ଟିକଲା, ସେ ଦୁଇଟିର ଆକାର, ଓଜନ ଓ ପୃଥିବୀକୁ ପରିଭ୍ରମଣ କାଳର ଗତିରେ ଯଥେଷ୍ଟ ପାର୍ଥକ୍ୟ ଦେଖାଯାଏ । ପ୍ରଥମଟିର ଓଜନ ପ୍ରାୟ ଦୁଇ ମହଣ ଥିବାସ୍ଥଳେ ଦ୍ୱିତୀୟଟିର ଓଜନ ଚଉଦ ମହଣରୁ କମ୍ ନୁହେଁ । ପ୍ରଥମଟି ପୃଥିବୀପୃଷ୍ଠଠାରୁ ୫୬୦ ମାଇଲ ଦୂରରେ ଥିଲାବେଳେ ଦ୍ୱିତୀୟଟି ହଜାରେ ମାଇଲରୁ ଊର୍ଦ୍ଧ୍ୱ ଦୂରତାରେ ଥିଲା । ଏସବୁକୁ ଛାଡ଼ି ଦ୍ୱିତୀୟ ସ୍ପୁଟ୍‌ନିକର ବିଶେଷତ୍ୱ ହେଉଛି ଯେ ଏଥିମଧ୍ୟରେ ଲାଇକା ନାମକ ଏକ ଜୀବନ୍ତ କୁକୁର ରହି ମହାଶୂନ୍ୟରେ ପୃଥିବୀ ପରିଭ୍ରମଣ କରୁଥିଲା ।

କେଉଁ ପଦ୍ଧତି ଅବଲମ୍ବନ କରାଯାଇ ଏହି କୃତ୍ରିମ ଉପଗ୍ରହକୁ ମହାଶୂନ୍ୟକୁ ଛଡ଼ାଗଲା, ତାହା ସାଧାରଣ ମନୁଷ୍ୟକୁ ଯେ କେବଳ ଆଶ୍ଚର୍ଯ୍ୟାନ୍ୱିତ କରିଛି ତାହା ନୁହେଁ, ପୃଥିବୀର ବଡ଼ ବଡ଼ ବିଜ୍ଞାନୀନାୟକ ତଥା ବୈଜ୍ଞାନିକମାନେ ମଧ୍ୟ ରୁଷ ବୈଜ୍ଞାନିକମାନଙ୍କର ଏତାଦୃଶ କୃତକାର୍ଯ୍ୟତାରେ ଆଶ୍ଚର୍ଯ୍ୟ ନ ହୋଇ ରହିପାରି ନାହାନ୍ତି । ବର୍ତ୍ତମାନ ଆମେ ଆଲୋଚନା କରିବା ମହାଶୂନ୍ୟ ମଧ୍ୟକୁ କୃତ୍ରିମ ଉପଗ୍ରହ କେଉଁ କେଉଁ ପଦ୍ଧତିରେ ଯିବା ସମ୍ଭବପର ।

ପୃଥିବୀପୃଷ୍ଠରୁ ମହାଶୂନ୍ୟ ମଧ୍ୟକୁ କୃତ୍ରିମ ଉପଗ୍ରହ କାହିଁକି, ତାହାଠାରୁ ଆହୁରି ଶ୍ରେଷ୍ଠ ଯେ କୌଣସି ପଦାର୍ଥ ପ୍ରେରଣ କରିବା କାଠିକର

ପାଠ । ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ଏହା ଉପରିସ୍ଥ ସବୁ ପଦାର୍ଥକୁ ନିଜ ଆଡ଼କୁ ଏତେ ଜୋରରେ ଟାଣୁଥିବାରୁ କୌଣସି ପଦାର୍ଥ ପକ୍ଷରେ ପୃଥିବୀ-ପୃଷ୍ଠ ଛାଡ଼ି ଆକାଶ ଭିତରକୁ ଯିବା ସେତେ ସହଜ ନୁହେଁ; ଯଦି ଯାଏ, ତେବେ ତାହା କିଛି ସମୟ ପରେ ପୁଣି ପୃଥିବୀପୃଷ୍ଠକୁ ଫେରିଆସିବାକୁ ବାଧ୍ୟ ହୁଏ ।

ଆମେ ଯେତେବେଳେ ଗୋଟିଏ ଟେକା ଉପରକୁ ଛାଡ଼ୁ, ଟେକା ଦେହରେ ଆମେ ଆମର କିଛି ଦୈହିକ ବଳ ପ୍ରୟୋଗ କରି ଛାଡ଼ିଥାଉଁ । ସେହି ବଳ ନେଇ ଟେକା ଉପରକୁ ଯାଏ । ସେହି ଟେକା ପ୍ରତି ପୃଥିବୀର ଆକର୍ଷଣ ଫଳରେ ଟେକାର ବେଗ ଧୀରେ ଧୀରେ କମିବାକୁ ଲାଗେ । ଏହିଭଳି କମି କମି ପରିଶେଷରେ ଟେକାର ବେଗ ଶୂନ୍ୟକୁ ଚାଲିଆସେ ଓ ତତ୍ପରେ ଏହା ଊର୍ଦ୍ଧ୍ୱକୁ ଆଉ ନ ଯାଇ ପୃଥିବୀ ଆଡ଼କୁ ଟାଣିହୋଇ ଫେରିଆସେ । ଯେତେ ବଳ ପ୍ରୟୋଗ କରି ଉପରକୁ ଯେ କୌଣସି ପଦାର୍ଥ ଛାଡ଼ିଲେ ମଧ୍ୟ ତାହା ପରିଶେଷରେ ପୃଥିବୀକୁ ଫେରିଆସିବାକୁ ବାଧ୍ୟ ହୁଏ । ମାଧ୍ୟାକର୍ଷଣ ଶକ୍ତିର ଏହି ପ୍ରଭାବ ଯୋଗୁ ଆକାଶ ମଧ୍ୟକୁ ଯେତେ ହାଉଇ, ରକେଟ ବା ବେଲୁନ ଛଡ଼ାଯାଇଛି, ତାହା ପରିଶେଷରେ ମନକୁ ମନ ପୃଥିବୀପୃଷ୍ଠକୁ ଫେରିଆସିଛି ।

ଆପଣମାନେ ପଚାରିପାରନ୍ତି, ସବୁ ପଦାର୍ଥ ଯଦି ପୃଥିବୀପୃଷ୍ଠକୁ ଫେରିଆସିବାକୁ ବାଧ୍ୟ, ତେବେ ରୁଷୀୟମାନଙ୍କ କୃତ୍ରିମ ଉପଗ୍ରହ ଦୁଇଟି ଫେରି ନ ଆସି ମହାଶୂନ୍ୟରେ ଘୂରୁଥିଲି କିପରି ? ଏହାର ଉତ୍ତରରେ ମୁଁ କହିବି, ଆମେ ଯଦି କୌଣସି ପଦାର୍ଥକୁ ପୃଥିବୀ ବାହାରକୁ ପଠାଇବା, ତେବେ ତାକୁ ଏପରି ଏକ ବିରାଟ ବଳ ଦେଇ ପଠାଇବାକୁ ପଡ଼ିବ, ଯାହା ଫଳରେ କି ଏହା ପୃଥିବୀର ଆକର୍ଷଣୀୟ ଶକ୍ତି ବାହାରକୁ ଚାଲିଯିବ ଓ ପୃଥିବୀକୁ ଆଉ ସହଜରେ ଫେରି ଆସିପାରିବ ନାହିଁ । ପୃଥିବୀପୃଷ୍ଠକୁ ଛାଡ଼ି ଚାଲିଯିବା ପାଇଁ ଯେଉଁ ବଳ ଦରକାର, ତା' କିଛି କମ୍ ନୁହେଁ । କୃତ୍ରିମ ଉପଗ୍ରହ ସୃଷ୍ଟିହେବା ପର୍ଯ୍ୟନ୍ତ ଯେତେ ଶକ୍ତିଶାଳୀ ରକେଟ, ଗାଇଡେଡ କ୍ଷେପଣାସ୍ତ୍ର ଆଦି ଆବିଷ୍କୃତ ହୋଇଥିଲା, ସେସବୁ ସାହାଯ୍ୟରେ ପୃଥିବୀପୃଷ୍ଠର ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ କୌଣସି ପଦାର୍ଥ ପ୍ରେରଣ କରିବା ସମ୍ଭବପର ହେଉଥିଲେହେଁ ମହା-ଶୂନ୍ୟର ଯେକୌଣସି ସ୍ଥାନକୁ କୌଣସି ପଦାର୍ଥ ପଠାଇବା ସମ୍ଭବପର ହେଉ

ନ ଥିଲା । ତେଣୁ ଏସବୁ ସାହାଯ୍ୟରେ କୃତ୍ରିମ ଉପଗ୍ରହକୁ ପୃଥିବୀ ବାହାରକୁ ପଠାଇବା ଆଶାକରିବା ବିଡ଼ମ୍ବନା ଛଡ଼ା ଆଉ କିଛି ନୁହେଁ ବୋଲି ବହୁ ବୈଜ୍ଞାନିକ ମତ ବ୍ୟକ୍ତ କରିଥିଲେ । ତେବେ ୧୯୫୭ ମସିହାର ମଧ୍ୟଭାଗରେ ରୁଷଦେଶରେ ବୈଜ୍ଞାନିକମାନେ ଯେଉଁ ଆନ୍ତର୍ମହାଦେଶୀୟ ବାଲିଷ୍ଟିକ ରକେଟ ଆବିଷ୍କାର କଲେ, ସେହି ରକେଟର ଶକ୍ତିକୁ ନେଇ କୃତ୍ରିମ ଉପଗ୍ରହ ପଠାଇବା ସମ୍ଭବପର ବୋଲି ବହୁ ବୈଜ୍ଞାନିକ ଆଶା ପୋଷଣ କରିଥିଲେ । ତେବେ ଏହି ଶକ୍ତିଶାଳୀ ରକେଟର ମୂଳପଦ୍ଧତି ଅନ୍ୟ କେଉଁ ଦେଶକୁ ଜଣା ନ ଥିବାରୁ ରୁଷଦେଶ ସର୍ବପ୍ରଥମେ ଏହି ରକେଟ ସାହାଯ୍ୟରେ କୃତ୍ରିମ ଉପଗ୍ରହ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲା । ବର୍ତ୍ତମାନ ନିଶ୍ଚିତ-ଭାବରେ ଜଣାଯାଇଛି ଯେ ରୁଷ ଦେଶର ଏହି ଦୁଇଟିଯାକ କୃତ୍ରିମ ଉପଗ୍ରହକୁ ମହାଶୂନ୍ୟକୁ ପଠାଇବାରେ ଏହି ଶକ୍ତିଶାଳୀ ରକେଟର ବିରାଟ କ୍ଷେପଣବଳକୁ ବ୍ୟବହାର କରାଯାଇଥିଲା ।

କୃତ୍ରିମ ଉପଗ୍ରହ ରକେଟ ସାହାଯ୍ୟରେ କିପରି ମହାଶୂନ୍ୟକୁ ପ୍ରେରିତ ହେଲା, ତାହା ଜାଣିବାକୁ ଆପଣମାନେ ବର୍ତ୍ତମାନ ବ୍ୟସ୍ତ ହେଉଥିବେ ଓ ହେବା ମଧ୍ୟ ସ୍ୱାଭାବିକ । ସୋଭିଏଟ୍ ରୁଷର ବର୍ତ୍ତମାନ ସୁଦ୍ଧା ପଠାଯାଇଥିବା ଉପଗ୍ରହଗୁଡ଼ିକୁ ଗୋଟିଏ ଶକ୍ତିଶାଳୀ ରକେଟ ସାହାଯ୍ୟରେ ନ ପଠାଇ ପ୍ରତ୍ୟେକଟି ପାଇଁ ତିନୋଟି ରକେଟ୍ ବ୍ୟବହୃତ ହୋଇଥିଲା । ତେବେ ଏହି ତିନୋଟିଯାକ ରକେଟ୍ ଉପଗ୍ରହକୁ ପଠାଇବା ପାଇଁ ଏକ ସଙ୍ଗରେ ବ୍ୟବହୃତ ନ ହୋଇ ତ୍ରି-ସୋପାନପଦ୍ଧତି ସାହାଯ୍ୟରେ ଗୋଟିକ ପରେ ଗୋଟିଏ ବ୍ୟବହୃତ ହୋଇ ପୃଥିବୀରେ ଏହି ଅତ୍ୟାଶ୍ଚର୍ଯ୍ୟ କାର୍ଯ୍ୟଟିକୁ ଖୁବ୍ ଦକ୍ଷତାର ସହିତ ସମ୍ପାଦନ କରାଯାଇପାରିଥିଲା ।

ମହାଶୂନ୍ୟରେ ଏହି ଯେଉଁ କୃତ୍ରିମ ଉପଗ୍ରହ ଘୂରେ, ତାହାର କକ୍ଷ କେଉଁ ଆକୃତିର ହେବ, ତାହା ଏହାର ଘୂର୍ଣ୍ଣନ ବେଗ ଉପରେ ନିର୍ଭର କରେ । ଏହି ଉପଗ୍ରହ ଘଣ୍ଟାକୁ ଯଦି ୧୮,୦୦୦ ମାଇଲ ବେଗରେ ଘୂରେ, ତେବେ ସେମାନଙ୍କ କକ୍ଷ ଅଣ୍ଡାକୃତି ବା ଉପବୃତ୍ତାକାର ହେବା ସମ୍ଭାବନା ।

ଗଣନା ଦ୍ୱାରା ଆହୁରି ଜଣାଯାଇଛି ଯେ କୃତ୍ରିମ ଉପଗ୍ରହର ବେଗ ଯଦି ଘଣ୍ଟାକୁ ୧୮,୦୦୦ ମାଇଲ ବେଗରୁ କମ୍ ହୁଏ, ତେବେ ଏହା ପୃଥିବୀ

ଗୃହପାଖରେ ବେଶି ସମୟ ଧରି ଘୂରି ପାରେ ନାହିଁ । ପୃଥିବୀର ମାଧ୍ୟାକର୍ଷଣ ବଳ ଏହାକୁ ଧୀରେ ଧୀରେ ଟାଣିଆଣି ଏହାର ବେଗ କ୍ରମଶଃ କମାଇଦିଏ । ପରିଶେଷରେ ଏହା ପୃଥିବୀ ଉପରେ ଖସିପଡ଼େ । ଗଣନା ଦ୍ୱାରା ପୁନଶ୍ଚ ନିର୍ଦ୍ଧାରିତ ହୋଇଛି ଯେ ଏହି ବେଗ ଯଦି ଘଣ୍ଟାକୁ ୨୫,୦୦୦ ମାଇଲରୁ ଅଧିକ ନ ହୁଏ, ତେବେ କୌଣସି ପଦାର୍ଥ ପୃଥିବୀ ଛାଡ଼ି ଅନ୍ୟ ଗ୍ରହ ଉପଗ୍ରହ ଅଭିମୁଖେ ଯାଇପାରିବ ନାହିଁ । ତେଣୁ ମଙ୍ଗଳ ଗ୍ରହ ଆଦି ଗ୍ରହ ଅଭିମୁଖେ ପୃଥିବୀପୃଷ୍ଠରୁ ଯିବାକୁ ହେଲେ ପୃଥିବୀରୁ ଯାଉଥିବା ପଦାର୍ଥର ବେଗ ଘଣ୍ଟାକୁ ୨୫,୦୦୦ ମାଇଲରୁ ଅଧିକ ହେବା ବାଞ୍ଛନୀୟ, ନଚେତ୍ ଏହା ପୃଥିବୀ ଗୃହପାଖରେ ଏକ ଉପଗ୍ରହ ଭାବରେ ଘୂରିବୁଲିବ । ରୁଷୀୟ କୃତ୍ରିମ ଉପଗ୍ରହ ଏକ ଉପବୃତ୍ତାକାର କକ୍ଷରେ ପୃଥିବୀ ଗୃହପାଖରେ ଘୂରୁଥିବାରୁ ଏହା ବିଭିନ୍ନ ସମୟରେ ପୃଥିବୀଠାରୁ ଭିନ୍ନ ଭିନ୍ନ ଦୂରତାରେ ରହେ । ଏହି ଉପଗ୍ରହ ପୃଥିବୀ ଗୃହପାଖରେ ବିଷୁବମଣ୍ଡଳୀୟ ଭାବରେ ବା ମେରୁମଣ୍ଡଳୀୟ ଭାବରେ ନ ଘୂରି ବିଷୁବରେଖାକୁ ୬୫ଡିଗ୍ରୀ କୋଣ କରି ଘୂରିବା ଦେଖାଯାଇଛି ।

---

କୃତ୍ରିମ ଉପଗ୍ରହକୁ ରାତିରେ କିମ୍ବା ଦିନରେ ଠାବ କରିବା କଷ୍ଟକର । ସନ୍ଧ୍ୟା କିମ୍ବା ସକାଳ ସମୟରେ ଯେତେବେଳେ ସୂର୍ଯ୍ୟଙ୍କର କିରଣ ଉଜ୍ଜ୍ୱଳ ନଥାଏ ଅଥଚ ଆକାଶରେ ସୂର୍ଯ୍ୟଙ୍କ କିରଣ ହେତୁ ଉପଗ୍ରହ ଆଲୋକିତ ହୋଇଥାଏ; ସେତେବେଳେ ଏହାର ପ୍ରତିଫଳିତ ରଶ୍ମି ଦ୍ୱାରା ଏହାକୁ ଆକାଶରେ ଦେଖିବା ସମ୍ଭବପର । ମହାଶୂନ୍ୟରେ ଘୂରୁଥିବା ଏହି କୃତ୍ରିମ ଉପଗ୍ରହକୁ ପୃଥିବୀରେ ଥାଇ ଯେତେବେଳେ ପାରି ସେତେବେଳେ ଦୂରବୀକ୍ଷଣ ସାହାଯ୍ୟରେ ଠାବ କରିବା ଅସମ୍ଭବ । ପୂର୍ବରୁ ଆକାଶରେ ଏହାର ଅବସ୍ଥାନ ଆଦି ଗଣନା କରି ସ୍ଥିର କରି ନ ଥିଲେ ଏହାକୁ ଦୂରବୀକ୍ଷଣ ସାହାଯ୍ୟରେ ମଧ୍ୟ ସହଜରେ ଠାବ କରିହେବ ନାହିଁ । ଆକାଶରେ ଏହି କୃତ୍ରିମ ଉପଗ୍ରହଗୁଡ଼ିକ ସେକେଣ୍ଡକୁ ହାରାହାରି ପାଞ୍ଚ ମାଇଲ ବେଗରେ ଯାଉଥିବାରୁ ଓ ଚକ୍ଷୁର ଦୃଷ୍ଟି ସ୍ଥିରତା ଦୋଷ ହେତୁ ଏହା ଏକ ମ୍ଳାନ ଆଲୋକବିନ୍ଦୁଠାରୁ ବଡ଼ ଦିଶିବ ନାହିଁ । ଏହି କେତେଦିନ ତଳେ ରୁଷୀୟମାନଙ୍କର ଦ୍ୱିତୀୟ କୃତ୍ରିମ ଉପଗ୍ରହ କିପରି ସକାଳେ ଓ ସନ୍ଧ୍ୟା ବେଳେ ଆପଣମାନଙ୍କୁ ଏହି କଲିକତାରେ ଖାଲି ଆଖିରେ ଦିଶୁଥିଲା, ତାହା ଏଠାରେ କହିବା ନିଷ୍ପ୍ରୟୋଜନ ।...

ନିଉଟନଙ୍କ ସୂତ୍ର ଅନୁଯାୟୀ ମହାଶୂନ୍ୟରେ କୌଣସି ବାଧା ନ ଥିବାରୁ ସେଠାରେ ଏହି ଗତିଶୀଳ ପଦାର୍ଥର ବେଗ ହ୍ରାସ ହେବା ସମ୍ଭବପର ନୁହେଁ । କିନ୍ତୁ କୃତ୍ରିମ ଉପଗ୍ରହଗୁଡ଼ିକ ପୃଥିବୀଠାରୁ ଯଥେଷ୍ଟ ଦୂରରେ ନ ଥିବାରୁ ସେମାନଙ୍କ ପକ୍ଷରେ ନିଜ ନିଜ ବେଗ ଅକ୍ଷୁଣ୍ଣ ରଖିବା ସମ୍ଭବପର ନୁହେଁ । ସେମାନଙ୍କ ଘୂରିବା ସ୍ଥାନରେ ପୃଥିବୀର ଆକାଶମଣ୍ଡଳ ନ ଥିଲେ ମଧ୍ୟ ସେମାନଙ୍କ ବେଗ ଦିନକୁଦିନ ହ୍ରାସ ପାଇବାର କଥା । ପୃଥିବୀ-ଠାରୁ ଦୂରରେ ଥିଲେ ମଧ୍ୟ ସେଗୁଡ଼ିକ ଉପରେ ପୃଥିବୀର ଆକର୍ଷଣଶକ୍ତି ଯଥେଷ୍ଟ ଥାଏ । ପୃଥିବୀର ଆକର୍ଷଣ କ୍ଷେତ୍ର ବାହାରେ ନ ଥିବାରୁ ପୃଥିବୀ ଦ୍ୱାରା ସେଗୁଡ଼ିକ ପୃଥିବୀ ଆଡ଼କୁ ସର୍ବଦା ଆକୃଷ୍ଟ ।”

ଘନ ଘନ କରତାଳିରେ ବେଥୁନ୍ କଲେଜର ବକ୍ତୃତାପ୍ରାଙ୍ଗଣ କମ୍ପିଉଠିଲା ।

“ସାର୍, ପୃଥିବୀ ବାୟୁମଣ୍ଡଳକୁ ଖସିଆସିଲା ବେଳେ ସ୍ପୁଟ୍‌ନିକ୍ ଦଗ୍ଧ ନ ହୋଇଯାଏ କେମିତି ? ଉଲ୍‌କା ତ ଖସିଲାବେଳେ ଦଗ୍ଧ ହୋଇ-ଉଭେଇଯାଏ ।” ଜଣୈକ ଝିଅ ଉଠି ପଚାରିଲା ।

“ପୃଥିବୀକୁ ଖସିଆସିଲାବେଳେ ସ୍ପୁଟ୍‌ନିକ ଖୁବ୍ ବେଗରେ ଖସିଆସେ; ଫଳରେ ଆକାଶର ବାୟୁ ସହିତ ଘର୍ଷଣ କରି ବିରାଟ ତାପଶକ୍ତି ଉତ୍ପନ୍ନ-ପୂର୍ବକ ସେହି ତାପଶକ୍ତିରେ ନିଜେ ଦଗ୍ଧ ହୋଇଯିବା କଥା; କିନ୍ତୁ ଏହା ଉପରେ ଥିବା ଏକ ଧାତବ ଆବରଣ ଏହାକୁ ରକ୍ଷାକରେ । କୃତ୍ରିମ ଉପଗ୍ରହ ଦଗ୍ଧ ହୋଇଯିବ କି ପୃଥିବୀପୃଷ୍ଠରେ ନିଖୁଣଭାବେ ଖସିପଡ଼ିବ, ତାହା ନିର୍ଭର କରେ କୃତ୍ରିମ ଉପଗ୍ରହର ଏହି ବାହ୍ୟ ଆବରଣର ଆକାର ଓ ମୋଟ ଉପରେ । ଏହା ଯଦି ଖୁବ୍ ଉଚ୍ଚ ଗଳନାଙ୍କବିଶିଷ୍ଟ ଧାତୁରୁ ମୋଟ ହୋଇ ତିଆରି ହୋଇଥାଏ, ତେବେ ଏହା ଦଗ୍ଧ ନ ହୋଇ ପୃଥିବୀପୃଷ୍ଠରେ ଖସି ପଡ଼ିବାର ସମ୍ଭାବନା ।

କୃତ୍ରିମ ଉପଗ୍ରହ ପାଇଁ ଯେଉଁ ଇନ୍ଧନ ବ୍ୟବହୃତ ହୁଏ, ଆମକୁ ଆଜ୍ଞା ସେ ବିଷୟରେ ଟିକିଏ କହିବେ କି ? ତୃତୀୟ ବାର୍ଷିକ ଶ୍ରେଣୀର ଝିଅଟିଏ ଉଠି ପଚାରିଲା ।

ଅଧ୍ୟାପକ ପଟ୍ଟନାୟକ ଉଠି ଠିଆହୋଇ ଉତ୍ତର ଦେଲେ, "ସୋଭିୟେଟ୍ ବୈଜ୍ଞାନିକମାନେ ସେମାନଙ୍କ ରକେଟରେ ଯେଉଁ ଇନ୍ଧନ ବ୍ୟବହାର କରିଥିଲେ, ତାହା ଏ ପର୍ଯ୍ୟନ୍ତ ଗୋପନୀୟ ରଖାଯାଇଛି । ତେବେ ତାହା ଯେ ଏକପ୍ରକାର ଅତି ନୂତନ ଧରଣର ଇନ୍ଧନ, ଏହା ଅନେକଙ୍କର ବିଶ୍ୱାସ । ଆଜିପର୍ଯ୍ୟନ୍ତ ବିଭିନ୍ନ ରକେଟରେ ଯେଉଁସବୁ ଇନ୍ଧନ ବ୍ୟବହୃତ ହେଉଥିଲା; ସେଗୁଡ଼ିକ ରାସାୟନିକ ପ୍ରକ୍ରିୟା ସାହାଯ୍ୟରେ ଶକ୍ତି ଉତ୍ପାଦନ କରୁଥିଲେ । ତରଳ ହାଇଡ୍ରୋଜେନ୍, ତରଳ ଉଦଜାନ, କିରୋସିନ ତେଲ, ପେଟ୍ରୋଲ ଏହିଭଳି ଇନ୍ଧନ ଭିତରୁ ଗୋଟିଏ ଗୋଟିଏ । ଉପରୋକ୍ତ ଦାହନଶୀଳ ଇନ୍ଧନ ବ୍ୟତୀତ ଦହନ ସହାୟକ ବସ୍ତୁ ମଧ୍ୟ ବ୍ୟବହୃତ ହୁଏ । ସେହିସବୁ ଦହନ ସହାୟକ ପଦାର୍ଥ ଭିତରେ ତରଳ ଅମ୍ଳଜାନ, ତରଳ ଓଜୋନ୍, ହାଇଡ୍ରୋଜେନ୍ ପେରକ୍‌ସାଇଡ୍ ଆଦି ତରଳ ପଦାର୍ଥ ପ୍ରଧାନ ।

ପାଶ୍ଚାତ୍ୟ ବୈଜ୍ଞାନିକମାନେ ହିସାବ କରି କହନ୍ତି ଯେ ରକେଟ-ମାନଙ୍କରେ ଯେଉଁ ସାଧାରଣ ଇନ୍ଧନ ବ୍ୟବହୃତ ହୁଏ, ତାହା କୃତ୍ରିମ ଉପଗ୍ରହକୁ ଉପରୋକ୍ତ ବଳ ଦେବାପାଇଁ ଯଥେଷ୍ଟ ନୁହେଁ । ଏଥିପାଇଁ ଏତେ ଶକ୍ତିଶାଳୀ ରକେଟ ବ୍ୟବହାର କରିବାକୁ ପଡ଼ିବ ଓ ରକେଟଗୁଡ଼ିକ ଏତେ ବଡ଼ ଓ ଭାରି ହୋଇପଡ଼ିବ, ଯାହା ଫଳରେ କି ସେଇ ରକେଟ ଓ କୃତ୍ରିମ ଉପଗ୍ରହକୁ ଉପରକୁ ଉଠାଇବାପାଇଁ ଅନ୍ୟ ରକେଟର ସାମର୍ଥ୍ୟ ପାଇବ ନାହିଁ ।

ମୋଟ ଉପରେ ଆଜିପର୍ଯ୍ୟନ୍ତ ଜଣାଥିବା ରକେଟ ଇନ୍ଧନକୁ ବ୍ୟବହାର କରି ଦ୍ୱିତୀୟ ଓ ତୃତୀୟ କୃତ୍ରିମ ଉପଗ୍ରହ ତ ଦୂରର କଥା, ପ୍ରଥମ ଉପଗ୍ରହକୁ ମହାଶୂନ୍ୟକୁ ପଠାଇବା ଅସମ୍ଭବ । ସେମାନଙ୍କ ମତ ପୂର୍ବ ପ୍ରଚଳିତ କୌଣସି ଗତାନୁଗତିକ ରକେଟ ଇନ୍ଧନ ସୋଭିଏଟ୍ ବୈଜ୍ଞାନିକମାନେ ସେମାନଙ୍କ ରକେଟରେ ବ୍ୟବହାର କରି ନାହାନ୍ତି । ମୁଁ କିନ୍ତୁ ଏଥିରେ ଏକମତ ନୁହେଁ । ଆମର ଜଣାଥିବା ଗତାନୁଗତିକ ଇନ୍ଧନ ଓ ଇନ୍ଧନସହାୟକ ପଦାର୍ଥ ସାହାଯ୍ୟରେ ଶକ୍ତିଶାଳୀ ରକେଟ୍ ସୃଷ୍ଟି କରିବା ଅସମ୍ଭବ ନୁହେଁ ।"

ସାର୍, ଆପଣ ଯେଉଁ ବି-ସୋପାନ ପଦ୍ଧତି କଥା କହିଲେ ତାହା କଣ ? ଜଣେ ଛାତ୍ର ଠିଆହୋଇ ପଚାରିଲା ।

ଏହି ତ୍ରି-ସୋପାନ ପଦ୍ଧତିରେ ତିନୋଟି ରକେଟ ବ୍ୟବହୃତ ହୋଇଥାଏ ଓ ଏହି ତିନୋଟିଯାକ ରକେଟ ଏକ ସଙ୍ଗରେ କାର୍ଯ୍ୟ ନ କରି ଗୋଟିକ ପରେ ଗୋଟିଏ କାର୍ଯ୍ୟ କରିଥାନ୍ତି । ଏଥିପାଇଁ ତିନୋଟିଯାକ ରକେଟ ଗୋଟିକ ପରେ ଗୋଟିଏ ହୋଇ ମହାଶୂନ୍ୟକୁ ପଠାଯିବା ପଦାର୍ଥ ସହିତ ଏପରି ଭାବରେ ଲଗାଯାଇଥାଏ ଯେ ସର୍ବପ୍ରଥମେ ପ୍ରଥମ ରକେଟଟି ବିସ୍ଫୋରିତ ହୋଇ ପଠାଯିବା ପଦାର୍ଥ ସମେତ ଅନ୍ୟ ଦୁଇଟି ରକେଟକୁ ପୃଥିବୀପୃଷ୍ଠରୁ କିଛି ଊର୍ଦ୍ଧ୍ୱକୁ ଘେନିଯାଏ । ସେଠାରେ ଏଗୁଡ଼ିକୁ ପହଞ୍ଚାଇଦେଇ ପ୍ରଥମ ରକେଟ ତଳକୁ ଖସିଆସେ । ସେଠାରେ କ୍ରମରେ ଦ୍ୱିତୀୟ ରକେଟଟି ବିସ୍ଫୋରିତ ହୁଏ । ଫଳରେ ତୃତୀୟ ରକେଟ ସମେତ ପଠାଯିବା ପଦାର୍ଥ ଆକାଶମଣ୍ଡଳର ଆହୁରି ଉପରକୁ ଚାଲିଯାଏ । ସେଠାରେ ତୃତୀୟ ରକେଟଟି ବିସ୍ଫୋରିତ ହୋଇ ପଠାଯିବା ପଦାର୍ଥକୁ ମହାଶୂନ୍ୟର ଯଥାସ୍ଥାନରେ ପହଞ୍ଚାଇ ଦେଇ ଏହାକୁ ପୃଥିବୀ ଚାରିପାଖରେ ଘୂରିବାପାଇଁ ଏକ ବଳ ଦିଏ । ଏହି ହେଲା ତ୍ରି-ସୋପାନପଦ୍ଧତିର ମୂଳତତ୍ତ୍ୱ ।

ଏହି ତ୍ରି-ସୋପାନ ପଦ୍ଧତିକୁ ଅନୁସରଣ କରି ରୁଷ ବୈଜ୍ଞାନିକମାନେ ସେମାନଙ୍କ ତିନୋଟିଯାକ କୃତ୍ରିମ ଉପଗ୍ରହକୁ ଆକାଶକୁ ଛାଡ଼ିଥିବାର ଜଣାଯାଇଛି । ସେମାନଙ୍କ ପଦ୍ଧତି ଅନୁସାରେ ପ୍ରଥମ ରକେଟଟି କୃତ୍ରିମ ଉପଗ୍ରହ ସମେତ ଅନ୍ୟ ଦୁଇଟି ରକେଟକୁ ପୃଥିବୀପୃଷ୍ଠରୁ ୪୦ ମାଇଲ ଉପରକୁ ସିଧାସଳଖ ଘେନି ଯାଇଥିଲା । ଚାଳିଶ ମାଇଲ ଉପରେ ଦ୍ୱିତୀୟ ରକେଟଟି ବିସ୍ଫୋରିତ ହୋଇ ତୃତୀୟ ରକେଟ ସହ କୃତ୍ରିମ ଉପଗ୍ରହକୁ ମହାଶୂନ୍ୟର ଯଥାସ୍ଥାନରେ ପହଞ୍ଚାଇ ଦେଇଥିଲା । ଏଥି ସଙ୍ଗେ ସଙ୍ଗେ ଏଥିରେ ଥିବା 'ଗାଇରସ୍କୋପ୍' ନାମକ ଏକ ଯନ୍ତ୍ର କୃତ୍ରିମ ଉପଗ୍ରହକୁ ୪୫ ଡିଗ୍ରୀ କୋଣକୁ ବଙ୍କେଇ ଦେଇଥିଲା । କୃତ୍ରିମ ଉପଗ୍ରହ ତୃତୀୟ ରକେଟ ସମେତ ମହାଶୂନ୍ୟର ଯଥାସ୍ଥାନରେ ପହଞ୍ଚିଲାକ୍ଷଣି ସେଠାରେ ଶେଷ ରକେଟଟି ବିସ୍ଫୋରିତ ହୋଇ ଦୁଇଟି କାର୍ଯ୍ୟ କରିବାକୁ ସମର୍ଥ ହେଲା । ପ୍ରଥମତଃ ଏହା କୃତ୍ରିମ ଉପଗ୍ରହକୁ ପୃଥିବୀପୃଷ୍ଠ ସହିତ ସମାନ୍ତର ରଖି ଖୁବ୍ ଜୋରରେ ଏପରି ଆଘାତ ଦେଲା ଯାହା ଫଳରେ କୃତ୍ରିମ ଉପଗ୍ରହ ଘଣ୍ଟାକୁ ୧୮,୦୦୦ ମାଇଲ ବେଗରେ ପୃଥିବୀ ଚାରିପାଖରେ ପରିଭ୍ରମଣ କରିବାକୁ ଲାଗିଲା । ଦ୍ୱିତୀୟରେ ତୃତୀୟ ରକେଟର ବିସ୍ଫୋରଣ ସମୟରେ କୃତ୍ରିମ ଉପଗ୍ରହ ଯେଉଁ ଆବଦ୍ଧକକ୍ଷ ଭିତରେ ଥିଲା, ତାହା ଖୋଲିଗଲା ଓ ସେଥିରୁ କୃତ୍ରିମ ଉପଗ୍ରହ ବାହାରିପଡ଼ି ଖୁବ୍ ଜୋରରେ

ନିଜ ଅକ୍ଷ ଚାରିପାଖରେ ଘୂରି ଘୂରି ଉପଗ୍ରହ ବିରାଟ ବେଗରେ ପୃଥିବୀକୁ ପ୍ରଦକ୍ଷିଣ କରିବାକୁ ଲାଗିଲା । ବନ୍ଧୁକ ଭିତରୁ ଯେତେବେଳେ ଗୋଳା ବାହାରିଯାଏ, ତାହା ଯେପରି ଖୁବ୍ ବେଗରେ ଯିବା ସଙ୍ଗେ ସଙ୍ଗେ ନିଜ ଚାରିପାଖରେ ଖୁବ୍ ଜୋରରେ ଘୂରି ଘୂରି ଯାଏ, ଏଠାରେ ଠିକ୍ ସେହିଭଳି କୃତ୍ରିମ ଉପଗ୍ରହ ନିଜ ଅକ୍ଷ ଚାରିପାଖରେ ଘୂରି ଘୂରି ପରିଭ୍ରମଣ କରିବାକୁ ଲାଗିଲା । ପୃଥିବୀର ମାଧ୍ୟାକର୍ଷଣ ଓ ତୃତୀୟ ରକେଟର ଆଘାତରୁ ଏହା ପୃଥିବୀ ଚାରିପାଖରେ ଗୋଲାକାର କକ୍ଷରେ ନ ଘୂରି ଅଣ୍ଡାକାର କକ୍ଷରେ ପୃଥିବୀକୁ ପ୍ରଦକ୍ଷିଣ କରିବାର ଦେଖାଗଲା ।”

ଅଧ୍ୟାପକ ପଟ୍ଟନାୟକ ତାଙ୍କ ବକ୍ତୃତାଦ୍ୱାରା ଶ୍ରୋତାମାନଙ୍କୁ ଏପରି ଭାବରେ ମନ୍ତ୍ରମୁଗ୍ଧ କରିଦେବେ ବୋଲି କେହି ଆଶା କରି ନ ଥିଲେ । ଏଡ଼େ କଠିନ ବିଷୟ ପୁଣି ଏଡ଼େ ସରଳ ଭାବରେ ଯେ ବର୍ଣ୍ଣିତ ହୋଇପାରେ, ତାହା ଦେଖି ସମସ୍ତେ ଅବାକ୍ ।

ବକ୍ତୃତା ପରେ ମିସ୍ ସେନ୍ ଅଧ୍ୟାପକଙ୍କୁ ଧନ୍ୟବାଦ ଦେବାକୁ ଯାଇ କହିଲେ, “ଆପଣମାନେ ହୁଏତ ଜାଣି ନାହାନ୍ତି, ଅଧ୍ୟାପକ ପଟ୍ଟନାୟକ ଯାହାଙ୍କର ଓଜସ୍ୱିନୀ ବକ୍ତୃତାରେ ଆପଣମାନେ ଆଜି ମନ୍ତ୍ରମୁଗ୍ଧ ହୋଇ-ପଡ଼ିଛନ୍ତି, ସେ ଥିଲେ ··ବିଲାତରେ···ମୋର ସହପାଠୀ । ତାଙ୍କର ଅଧିକ ସଂସ୍ପର୍ଶରେ ଆସିଥିବାରୁ ମୁଁ ତାଙ୍କର ବିରାଟ ପ୍ରତିଭା ସମ୍ବନ୍ଧରେ ଜାଣିବାକୁ ଯେତେ ସୁବିଧା ପାଇଛି, ହୁଏତ ଅନ୍ୟ କେହି ସେତେ ସୁବିଧା ପାଇ ନ ଥିବେ ।

· ଆପଣମାନେ ଆଜି ଯେଉଁ ସ୍ପୁଟ୍‌ନିକ ବିଷୟରେ ଏତେ ଆଗ୍ରହାନ୍ୱିତ ହେଉଛନ୍ତି; ସେହି ସ୍ପୁଟ୍‌ନିକ ମୂଳରେ ରୁଷୀୟ ବୈଜ୍ଞାନିକମାନେ ଥିଲେହେଁ ସ୍ପୁଟ୍‌ନିକର ଅବାସ୍ତବ ପରିକଳ୍ପନାକୁ ବାସ୍ତବତାରେ ପରିଣତ କରିବାରେ ଅଧ୍ୟାପକ ପଟ୍ଟନାୟକଙ୍କ ହାତ କିଛି କମ୍ ନୁହେଁ । ଆପଣମାନେ ଜାଣି ନାହାନ୍ତି, ଯୁଦ୍ଧପରେ ଆମେ ଯେତେବେଳେ ଉଚ୍ଚଶିକ୍ଷାପାଇଁ ବିଦେଶକୁ ଗଲୁଁ, କଲିକତାରୁ ଆମେ ଦୁହେଁ ବାହାରିଥିଲୁଁ ଏକ ସଙ୍ଗରେ । ବିଲାତରେ ପହଞ୍ଚି ମୁଁ ଅଧ୍ୟୟନ କଲି ଲଣ୍ଡନ ବିଶ୍ୱବିଦ୍ୟାଳୟ କଲେଜରେ, ଅଧ୍ୟାପକ ପଟ୍ଟନାୟକ ଗବେଷଣା କଲେ ଲଣ୍ଡନସ୍ଥ ଇମ୍ପେରିଆଲ କଲେଜର ପୃଥିବୀବିଖ୍ୟାତ ଗଣିତଜ୍ଞ ସାର୍

ଟମାସ୍ ଜେଫ୍ରସନ୍‌ଙ୍କ ଅଧୀନରେ । ପ୍ରାୟୋଗିକ ଗଣିତ, ବିଶେଷତଃ ବାଲିଷ୍ଟିକ ପରିଚ୍ଛେଦରେ ଅଧ୍ୟାପକ ଜେଫ୍ରସନ୍ ପୃଥିବୀରେ ଶ୍ରେଷ୍ଠତମ ବୈଜ୍ଞାନିକ ଭାବରେ ପ୍ରସିଦ୍ଧିଲାଭ କରିଥାନ୍ତି ।

ପୃଥିବୀ ଛାଡ଼ି ଆଉ ଏକ ଗ୍ରହ ବା ଉପଗ୍ରହକୁ ଯିବା ଏକ ଅତି ଲୋକପ୍ରିୟ ଧାରଣା ହୋଇଥିଲେହେଁ ଏହା ବହୁଦିନ ଧରି ଏକ ବିଳାସୀ କଳ୍ପନାର ବିଷୟବସ୍ତୁ ହୋଇ ରହିଥିଲା । ଯୁଦ୍ଧପୂର୍ବ ଗଣିତଜ୍ଞମାନେ ଏଭଳି ଅବାସ୍ତବ କଳ୍ପନାକୁ ଅସମ୍ଭବ ବୋଲି କହି ତ୍ୟାଗ କରିଥିଲେ । ସେମାନଙ୍କ ଭିତରୁ କେତେକେ ଭ୍ରମାତ୍ମକ ଗଣନା କରି ଦେଖାଇ ଦେଇଥିଲେ ଯେ କୌଣସି ବସ୍ତୁର ବେଗ ଯଦି ଆଲୋକବେଗର ଅର୍ଦ୍ଧେକ ନ ହୁଏ, ତେବେ ସେହି ବସ୍ତୁ ପକ୍ଷରେ ପୃଥିବୀ ତ୍ୟାଗ କରିବା ଅସମ୍ଭବ । ଆପଣମାନଙ୍କ ଭିତରୁ ଅନେକେ ଜାଣିଥିବେ ଯେ ପୃଥିବୀର କୌଣସି ବସ୍ତୁ ପକ୍ଷରେ ଏଭଳି ବେଗ ହାସଲ କରିବା ଅସମ୍ଭବ ଛଡ଼ା ଆଉ କିଛି ନୁହେଁ । ତେଣୁ ସେପରି ପରିସ୍ଥିତିରେ ପୃଥିବୀରୁ କୌଣସି ବସ୍ତୁ ମହାଶୂନ୍ୟ ଦେଇ ଅନ୍ୟ ଗ୍ରହ ଉପଗ୍ରହକୁ ଯିବା ସମ୍ଭାବନା କେତେ କମ୍, ତାହା ଆପଣମାନେ ଜାଣିପାରୁଥିବେ ।

ପୃଥିବୀର ସବୁ ଗଣିତଜ୍ଞଙ୍କର ଯେତେବେଳେ ଏହି ମତ, ବୈଜ୍ଞାନିକମାନେ ବାଧ୍ୟହୋଇ ଏହି ଆନ୍ତର୍ଗ୍ରହ ଭ୍ରମଣ ପ୍ରଚେଷ୍ଟାରୁ ବିରତ ହୋଇଥିଲେ । କିନ୍ତୁ ରୁଷିଆର ଜଣେ ଯୁବକ ବୈଜ୍ଞାନିକ ବୋଧହୁଏ ସେ ହେଉଛନ୍ତି ଲେନିନ୍‌ଗ୍ରାଡ୍ ବିଶ୍ୱବିଦ୍ୟାଳୟର ଅଧ୍ୟାପକ—ନାଁଟା କ'ଣ ଭୁଲିଯାଉଛି, ଅଧ୍ୟାପକଙ୍କ ଆଡ଼କୁ ଅନାଇ, 'ଏ. ଭି. ଲେପିନ୍‌ସ୍କି' ଅଧ୍ୟାପକ ପଟ୍ଟନାୟକ ନାଁଟା କହି ପକାଇଲେ— ସର୍ବପ୍ରଥମ ଗଣନା କରି ଦେଖାଇ-ଦେଲେ ଯେ ପୁରାତନ ଗଣିତଜ୍ଞମାନେ ଯାହା ଗଣନା କରିଛନ୍ତି, ତାହା ପ୍ରମାଦଯୁକ୍ତ । ସେମାନେ ଯେଉଁ ସମୀକରଣ ବ୍ୟବହାର କରି ଏହି ଫଳ ପାଇଛନ୍ତି, ତାହା ଏଠାରେ ଖାଟିବ ନାହିଁ । ଅଧ୍ୟାପକ ଲେପିନେସ୍କିଙ୍କର ଏହି ଆବିଷ୍କାର ପୃଥିବୀରେ ଚାଞ୍ଚଲ୍ୟ ଖେଳାଇଦେଲା । ପୃଥିବୀର ସବୁ ବଡ଼ ବଡ଼ ଗଣିତଜ୍ଞମାନେ ପୁଣି ଏହି ବିଷୟଟି ଆଡ଼କୁ ଆକୃଷ୍ଟ ହୋଇ ଏହା ଉପରେ ପୁନଃ ଗବେଷଣା ଆରମ୍ଭ କରିଦେଲେ ।

ଅଧ୍ୟାପକ ପଟ୍ଟନାୟକ ସେହିସବୁ ଗବେଷକଙ୍କ ଭିତରେ ସର୍ବପ୍ରଥମ । ସାର୍ ଜେଫ୍ରିସନ୍‌ଙ୍କ ତତ୍ତ୍ୱାବଧାନରେ ଗବେଷଣା କରି ସେ ଦେଖାଇଦେଲେ ଯେ ଯଦି କୌଣସି ବସ୍ତୁ ଘଣ୍ଟାକୁ ୨୫,୦୦୦ ମାଇଲ ବେଗରେ ପୃଥିବୀ ଛାଡ଼େ, ତେବେ ସେହି ପଦାର୍ଥ ପୂର୍ଣ୍ଣଭାବରେ ପୃଥିବୀକୁ ଛାଡ଼ି ଗ୍ରହ ଉପଗ୍ରହ ଅଭିମୁଖେ ଯାଇପାରିବ । ଅଧ୍ୟାପକ ପଟ୍ଟନାୟକଙ୍କର ଏହି ଆବିଷ୍କାର ଇଉରୋପ, ଆମେରିକା, ରୁଷିଆ ସମେତ ପୃଥିବୀର ସବୁ ଦେଶରେ ଚାଞ୍ଚଲ୍ୟ ଖେଳାଇଦେଲା । ଡକ୍ଟର ପଟ୍ଟନାୟକଙ୍କର ଏହି ଆବିଷ୍କାର ପୁଣି ପୃଥିବୀର ବୈଜ୍ଞାନିକମାନଙ୍କ ଭିତରେ ସୃଷ୍ଟିକଲା ଅପୂର୍ବ ଉତ୍ସାହ । ଫଳରେ ଏହା ଉପରେ ଚାଲିଲା ଭୂମୁଳ ଗବେଷଣା । ଅନ୍ୟ ଦେଶର ବୈଜ୍ଞାନିକମାନେ ଏହି ଆନ୍ତର୍ଗ୍ରହ ଭ୍ରମଣ ସମ୍ବନ୍ଧରେ ଯେତେ ଉତ୍ସାହିତ ନ ଥିଲେ, ରୁଷିଆର ବୈଜ୍ଞାନିକମାନେ ଉତ୍ସାହିତ ଥିଲେ ସର୍ବାଧିକ । ଫଳରେ ଆପଣମାନେ ଦେଖିପାରିଲେ ରୁଷିଆର ସର୍ବପ୍ରଥମ କୃତକାର୍ଯ୍ୟତା । ମୁଁ ଆଉ ଏ ବିଷୟରେ ଅଧିକ କହି ଆପଣମାନଙ୍କର ସମୟ ନଷ୍ଟ କରିବାକୁ ଚାହେଁ ନା । ତେବେ ଅଧ୍ୟାପକ ପଟ୍ଟନାୟକ ନିଜେ ସଂପୃକ୍ତ ଥିବାରୁ ଯେଉଁ କେତୋଟି ବିଷୟ କହିବାକୁ କୁଣ୍ଠାବୋଧ କରୁଥିଲେ, ମୁଁ ସେତିକ କହି ପୂରଣ କଲି ।......

ପ୍ରିନ୍‌ସିପାଲ୍ ମିସ୍ ସେନ୍ କହିସାରିଲା ପରେ କଲେଜର ସହକାରୀ ପ୍ରିନ୍‌ସିପାଲ୍ ମିସ୍ ବେନର୍ଜି ଅଧ୍ୟାପକ ପଟ୍ଟନାୟକଙ୍କୁ ଧନ୍ୟବାଦ ଦେବାକୁ ଯାଇ କହିଲେ, "ଆଜି ଆମେ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଡକ୍ଟର ପଟ୍ଟନାୟକଙ୍କ ମୁହଁରୁ ସ୍ପୁଟ୍‌ନିକ ଉପରେ ଏକ ବକ୍ତୃତା ଶୁଣି ନିଜକୁ କମ୍ ଗୌରବାନ୍ୱିତ ମନେକରୁନୁ । ତେବେ ମୋର ଅନୁରୋଧ, ମହାଶୂନ୍ୟ ଅଭିଯାନ ଓ ଏହାର ଭବିଷ୍ୟତ ସମ୍ବନ୍ଧରେ ଆଉଦିନେ ଆମ୍ଭମାନଙ୍କୁ ଏକ ଭାଷଣ ଦେଇ ଅଧ୍ୟାପକ ମହାଶୟ ବାଧିତ କରିବେ ବୋଲି ଆଶା ।"

× × × × ×

ବକ୍ତୃତା ପରେ ଅଧ୍ୟାପକ ପଟ୍ଟନାୟକ ଘରକୁ ଯିବାକୁ ବାହାରିଲା-ବେଳକୁ ମିସ୍ ସେନ୍ ତାଙ୍କର ମୃଗାକ୍ଷି ଦୁଇଟିକୁ ନଚାଇ କହିଲେ, "ଆଜି ଆମ ଘରେ ଆତିଥ୍ୟ ଗ୍ରହଣ ନ କରି କ'ଣ ଏମିତି ଚାଲିଯିବେ ମନୋଜବାବୁ ?

ଆପଣଙ୍କୁ ଅତଥିଭାବରେ ପାଇବାକୁ ସୌଭାଗ୍ୟ ମୋତେ କ'ଣ ଦେବାକୁ ଆପଣ ଏକାନ୍ତ ଅନିଚ୍ଛୁକ ? ମୋ ବନ୍ଧୁ, ଆଜ ଆପଣଙ୍କୁ ଏ ଗସ୍ତବ କୁଡ଼ଆକୁ ଯିବାକୁ ପଡ଼ବ ମନୋଜବାବୁ ।"

ଏତକ କହି ଅଧ୍ୟାପକଙ୍କ ହାତ ଧରି ଟାଣି ନେଇଗଲେ ମିସ୍ ସେନ୍‌ଗେଟ୍ ଆଡ଼କୁ ।





## ( ପାଞ୍ଚ )



ଅଧ୍ୟାପକ ପଟ୍ଟନାୟକଙ୍କର କ'ଣ ହୋଇଛି କେଜାଣି, ଆଜକାଲି ସେ କେବେ ପ୍ରାୟ ଘରେ ରହୁ ନାହାନ୍ତି । ଯେ ଦିନେ ଅନ୍ୟ କୌଣସି ବନ୍ଧୁଙ୍କ ଘରକୁ ଯିବାକୁ ସମୟର ଅସଦ୍ ବ୍ୟବହାର ବୋଲି ଭାବୁଥିଲେ, ସେ ଆଜକାଲି ଦିନରାତି ସର୍ବଦା ବାହାରେ ରହିବାକୁ ଭଲ ପାଉଛନ୍ତି । ଅମିତା ଦେବୀ ଅଧ୍ୟାପକଙ୍କର ଏଭଳି ପରିବର୍ତ୍ତନ ଦେଖି ଅତିଶୟ ଚିନ୍ତିତା । କାର୍ କିଣିବାକୁ ଯିବା ପୂର୍ବରୁ ଅଧ୍ୟାପକଙ୍କର ଯେଉଁ କଡ଼ା ତାଗିଦ୍, ତାହା ଆସି ତାଙ୍କ

କାନ ପାଖରେ ବେଳେ ବେଳେ ପ୍ରତିଧ୍ୱନିତ ହୋଇ ଯାଉଥାଏ—"କିଏ ଜାଣେ ଏଇ ସାମାନ୍ୟ କାର୍‌ଡ଼ଟାଏ ତୁମ ଓ ମୋ ମଧ୍ୟରେ ଏକ ପ୍ରାଚୀର ଭଳି ଠିଆ ନ ହେବ ମିତା ?" ଏଇ କଥା କେଇପଦ ତାଙ୍କ ମନ ଭିତରେ ବାରମ୍ବାର ଭୟ ସଞ୍ଚାର କରୁଥାଏ ।

ଛୋଟ ଛୋଟ କଥାରେ ଅଧ୍ୟାପକ ଏବେ ଏଣିକି ଖାଲି ବିଗୁଡ଼ୁଛନ୍ତି । ଅମିତା ଦେବୀ କି ପୁଅ କାହାପ୍ରତି ତାଙ୍କର ପୂର୍ବ ସୋହାଗ ନାହିଁ । ଅମିତା ଦେବୀ, ଯାହାଙ୍କୁ ସେ ପ୍ରାଣଠାରୁ ଅଧିକ ଭଲ ପାଉଥିଲେ; ତାଙ୍କ ସହିତ ଘରୋଇ ବ୍ୟାପାର ନେଇ କେତେ ଥର ମତାନ୍ତର ଘଟିଗଲାଣି । ଯେଉଁ ସ୍ୱାମୀ ତାଙ୍କୁ ପାଖରେ ନ ବସାଇଲେ ଖାଆନ୍ତିନି, ସେ ଆଜି ଯନ୍ତ୍ରଚାଳିତବତ୍ ଦି'ଟା ଖାଇଦେଇ ଘରୁ ଚାଲିଯାଉଛନ୍ତି । ଅତି ପ୍ରିୟ ପୁଅ, ଯାହାକୁ ନ ଦେଖିଲେ ସେ ପାଗଳ ହୋଇଯାଉଥିଲେ, ତା ଆଡ଼କୁ ଭୁଲରେ ବି ଅନାଉ ନାହାନ୍ତି ।

ଅଧ୍ୟାପକଙ୍କ ଏଭଳି ଆକସ୍ମିକ ପରିବର୍ତ୍ତନରେ ଅମିତା ଦେବୀ ବଡ଼ ଉଦ୍‌ବିଗ୍ନା ହୋଇପଡ଼ିଲେ । ପୂର୍ବ ସ୍ନେହ ସୋହାଗ କଥା ଭାବିଲା ବେଳକୁ ଆଖିରୁ ଶ୍ରାବଣ ମାସର ବୃଷ୍ଟିଧାରା ପରି ଲୁହ ଝରି ପଡ଼ୁଥାଏ । ସ୍ୱାମୀ ଯେତେବେଳେ ଭୁଲରେ ସୁଦ୍ଧା ଥରେ ପଚାରୁ ନାହାନ୍ତି, ସେ ବା ସେଠାରେ କେତେଦିନ ଏଇଭଳି ଭାବରେ ରହିବେ, ସେଇ ଥାଏ ତାଙ୍କର ଚିନ୍ତା । କିନ୍ତୁ ଅଧ୍ୟାପକଙ୍କର ଏହି ପରିବର୍ତ୍ତନର କାରଣ କ'ଣ ସେ ଯେତେ ଭାବିବାକୁ ଲାଗିଲେ, ତାଙ୍କୁ ଏହା ସେତେ ରହସ୍ୟମୟ ଜଣାପଡ଼ିଲା ।

ଅଧ୍ୟାପକ ଦିନେ ସକାଳ ସକାଳ କଲେଜକୁ ବାହାରୁଥାନ୍ତି, ଅମିତା ଦେବୀ ନିକଟକୁ ଆସି ହସି ହସି କହିଲେ, "ତୁମର ଆଜି ଆସିବା କେତେ ଡେରି ହେବ କୁହ ତ ? ଟିକିଏ ଶୀଘ୍ର ଆସିଲେ ଆମେ ଡାକ୍ତର ଦାସଗୁପ୍ତଙ୍କ ଘରଆଡ଼େ ବୁଲି ଯାଆନ୍ତେନି ? ମିସେସ୍ ଦାସଗୁପ୍ତ ସେ ଦିନ ଜିଦ୍ କରି କହିଯାଇଥିଲେ ତାଙ୍କ ଘରକୁ ବୁଲିଯିବା ପାଇଁ । ତୁମେ କେତେ-ବେଳେ ଆସିବ କୁହ, ମୁଁ ସବୁ କାମ ଦାମ ଶେଷ କରି ତୁମକୁ ଅପେକ୍ଷା କରି ବସିଥିବି ।"

" ମୁଁ ନ ଗଲେ ତୁମେ କଅଣ ଏକା ଯାଇପାରିବନି ? କଲେଜରେ ଆଜି. ଗୋଟିଏ ସଭା ଅଛି । ମୋତେ ସେଠାରେ ବକ୍ତୃତା ଦେବାକୁ ପଡ଼ିବ । ତେଣୁ ମୋର ଆସୁ ଆସୁ ଡେରି ହୋଇ ଯାଇପାରେ ।"

"ତୁମର ବକ୍ତୃତା ଅଛି ? କେଉଁଠି ? କାହିଁ ମୋତେ ତ ସେ ବିଷୟରେ କିଛି କହିନ ?"

"ତୁମକୁ ସବୁ କଥା ନ କହିଲେ କ'ଣ ସଂସାର ଅଚଳ ହୋଇ-ଯାଉଛି ? ତେବେ ମୋର ଆଜ ଆସିବା ଡେରି ହୋଇ ଯାଇପାରେ । ତୁମର ଯଦି ଇଚ୍ଛା ହୁଏ, ତେବେ ତୁମେ ଏକା ଡକ୍ଟର ଦାସଗୁପ୍ତଙ୍କ ଘରକୁ ଯାଇ ବୁଲି ଆସିପାର । ଫିବାବେଳ ହେଲେ ଫୋନ୍ କରିଦେବ, ମୁଁ କାର୍ ଓ ଡ୍ରାଇଭରକୁ ପଠାଇଦେବି ।"

ଅଧ୍ୟାପକଙ୍କ ଏଭଳି ଉତ୍ତରରେ ଅମିତା ଦେବୀ ଆଘାତ ପାଇ ଚୂପ ହୋଇ ରହିଲେ । ଆଉ କିଛି କହିଲେ ସେ କାଳେ ବିରକ୍ତ ହେବେ, ସେହି ଭୟରେ ସେ ଆଉ କିଛି କହିବାକୁ ସାହସ କଲେନି ।

ଅମିତା ଦେବୀ କ'ଣ କହିବେ, ସେ ଆଉକୁ ମୋଟେ ଭ୍ରୂକ୍ଷେପ ନ କରି ସଙ୍ଗେ ସଙ୍ଗେ ସେ କାର୍‌ରେ ବସିଲେ । ଗଲାବେଳେ ଅମିତା-ଦେବୀଙ୍କ ଆଡ଼କୁ ଅନାଇବା ପାଇଁ ଟିକିଏ ବି ମନ ହେଲାନି ତାଙ୍କର ।

× × × ×

ବେଥୁନ କଲେଜରେ ବକ୍ତୃତା-କକ୍ଷ । କଲେଜରେ ଛାତ୍ରୀମାନଙ୍କ-ଦ୍ୱାରା ବକ୍ତୃତା-କକ୍ଷ ଭରପୂର । ସହରର ବହୁ ଭଦ୍ରମହିଳା ବକ୍ତୃତା ଶୁଣିବା ପାଇଁ ଆମନ୍ତ୍ରିତ । ଅଧ୍ୟାପକ ପଟ୍ଟନାୟକ ମହାଶୂନ୍ୟ ଅଭିଯାନ ସମ୍ବନ୍ଧରେ ବକ୍ତୃତା ଦେବା ସ୍ଥିର ହୋଇଥାଏ । ମଣିଷ କିଭଳି ପୃଥିବୀରୁ ଯାଇ ଚନ୍ଦ୍ରରେ ବସତି ସ୍ଥାପନ କରି ସେଠାରୁ ସୌରଜଗତର ଅନ୍ୟ ଗ୍ରହ ଉପଗ୍ରହଠାକୁ ଯାଇ ବୁଲି ଆସିବ ବା ବିଶ୍ୱର ଅନ୍ୟ ନକ୍ଷତ୍ରଠାକୁ ଯାଇ ଫେରିଆସିବ ତାହାଁ ଉପରେ ଆଲୋଚନା କରିବା ସ୍ଥିର ହୋଇଥାଏ । ବକ୍ତୃତା ଆରମ୍ଭ ହେବାକୁ କିଛି ସମୟ ବାକି ଥାଏ, ଅମିତା ଦେବୀ କଳା ଚଷମା ଓ ଅର୍ଦ୍ଧଇଂରାଜୀ ପୋଷାକରେ ସଜ୍ଜିତା ହୋଇ ଛଦ୍ମବେଶରେ ବକ୍ତୃତା-କକ୍ଷରେ ପ୍ରବେଶ କଲେ, ଯେପରି କ ଅନ୍ୟମାନେ

ତାଙ୍କୁ ଚିହ୍ନି ନ ପାରିବେ । ସେ ବକ୍ତୃତା ମଞ୍ଚଠାରୁ ସାମାନ୍ୟ ଦୂରରେ ଏକପାଖିଆ ହୋଇ ବସିଲେ । ସାବଧାନ ହେଉଥାନ୍ତି ଅନ୍ୟ କେହି ଯେପରି ତାଙ୍କ ସହିତ କଥାବାର୍ତ୍ତା ନ କରନ୍ତି ।

ନିର୍ଦ୍ଧାରିତ ସମୟରେ ଅଧ୍ୟାପକ ଓ ମିସ୍ ସେନ୍ ବକ୍ତୃତାକକ୍ଷ ଭିତରକୁ ପଶିଆସିଥିଲେ । ଦୁଇ ଜଣଙ୍କର ହସ ହସ ମୁଖ ଦେଖି ଅମିତା ଦେବୀ କିଞ୍ଚିତ୍ ଚମକି ପଡ଼ିଲେ । ସେ ଆଜିକୁ ମାସ ମାସ ଧରି ଯାହାଙ୍କୁ ଘରେ କେବେ ହସ ହସ ମୁଖରେ ଦେଖିବାକୁ ପାଇ ନାହାନ୍ତି, ତାହାଙ୍କୁ ମିସ୍ ସେନ୍‌ଙ୍କ ସହିତ ହସ ହସ ମୁଖରେ ଆସୁଥିବାର ଦେଖି ଅସ୍ଥିର ନ ହେବେ ବା କେମିତି ? ମନ ଭିତରେ ଗୋଟିକ ପରେ ଗୋଟିଏ ଶତ ଭାବନାର ଆଘାତରେ ସେ ଝୁଣ୍ଡ଼ିପଡ଼ିଲେ । ତାଙ୍କର ମନ ହେଉଥାଏ ସେ ଏ ଦୃଶ୍ୟ ନ ଦେଖି ବକ୍ତୃତା-କକ୍ଷ ଛାଡ଼ି ଚାଲିଯାଆନ୍ତେ କି ? କିନ୍ତୁ ହୃଦୟର ଏକ କଠୋର ଆଦେଶରେ ସେ ବକ୍ତୃତା-କକ୍ଷ ଛାଡ଼ି ଚାଲିଯାଇ ପାରୁ ନ ଥାନ୍ତି ।

ଅଧ୍ୟାପକ ଓ ମିସ୍ ସେନ୍ ଯାଇ ପୂର୍ବରୁ ନିର୍ଦ୍ଦିଷ୍ଟ ଥିବା ଚେୟାରରେ ବସିପଡ଼ିଲେ । ସାମାନ୍ୟ ଉପକ୍ରମଣିକା ପରେ ମିସ୍ ସେନ୍‌ଙ୍କ ଅନୁରୋଧକ୍ରମେ ଅଧ୍ୟାପକ ତାଙ୍କ ଭାଷଣ ଆରମ୍ଭ କଲେ ।

"......ଅନ୍ଧକାର ରାତିରେ ସହସ୍ର ସହସ୍ର ନକ୍ଷତ୍ରଖଚିତ ଆମ ମୁଣ୍ଡଉପରର ଆକାଶମଣ୍ଡଳ ଅନାଇଲେ ମହାଶୂନ୍ୟର ଅନନ୍ତ ବିରାଟତା ଆମ ମନ ଉପରେ ଏକ ନମ୍ରଭାବ ଦେଇ ଆସେ । ଆଧୁନିକ ବିଜ୍ଞାନ ସାହାଯ୍ୟରେ ମଣିଷ ମହାଶୂନ୍ୟ ସମ୍ବନ୍ଧରେ ଯେତେ ଅଧିକ ଜ୍ଞାନ ଅର୍ଜନ କରୁଛି, ମହାଶୂନ୍ୟର ଅସୀମ ବିରାଟତାରେ ସେ ସେତେ ମୁଗ୍ଧ ହୋଇପଡ଼ୁଛି, ମହାଶୂନ୍ୟ ତାହା ନିକଟରେ ସେତେ ପ୍ରହେଳିକାମୟ ପ୍ରତୀୟମାନ ହୋଇଛି । ଏହି ମହାଶୂନ୍ୟ ଭିତରେ କେତେ ଗ୍ରହ, ଉପଗ୍ରହ, ନକ୍ଷତ୍ର, ନିହାରିକା ଯେ ରହିଛି, ତାହା କଳ୍ପନା କରିବାକୁ ଯାଇ ସେ ଅଧିକରୁ ଅଧିକ ଆଶ୍ଚର୍ଯ୍ୟ ହୋଇଛି ମାତ୍ର । ପୃଥିବୀ ଭଳି ଗ୍ରହରେ ଯଦି ଏତେ ବଡ଼ ମଣିଷ ସମାଜ ରହିପାରିଛି, ତେବେ ମହାଶୂନ୍ୟରେ ଯେଉଁଠି ପୃଥିବୀ ଭଳି ସହସ୍ର ସହସ୍ର ପୃଥିବୀ ବିଦ୍ୟମାନ, ସେହିସବୁ ଭିତରେ

ଆମ ପୃଥିବୀ ଭଳି କେତେ ଶହ ଶହ ମଣିଷସମାଜ ଯେ ଥାଇପାରେ, ଏହା କଳ୍ପନା କଲାବେଳକୁ ନିଜର ସତ୍ତା ଠିକ୍ କେଉଁଆଡ଼େ ଉଭେଇଯାଏ। ସେସବୁ ଗ୍ରହର ମଣିଷମାନେ ବିଜ୍ଞାନରେ ଆମ ଭଳି ବା ଆମଠାରୁ ଯେ ଅଧିକ ଉନ୍ନତ ହୋଇ ନ ଥିବେ, ତାହା ବା କିଏ କହିପାରିବ ? ସେମାନେ ବି ହୁଏ ତ ଆମ ଭଳି ସେମାନଙ୍କ ଗ୍ରହରୁ ଥାଇ ଆମ ପୃଥିବୀ ସମ୍ବନ୍ଧରେ ଠିକ୍ ଆମ ଭଳି ଧାରଣା ପୋଷଣ କରୁଥିବେ। ପ୍ରହେଳିକାମୟ ଏହି ଯେଉଁ ମହାଶୂନ୍ୟ ତହିଁ ଭିତରକୁ ଯାଇ ପ୍ରକୃତ ସତ୍ୟ ଆବିଷ୍କାର କରିବା ପାଇଁ ସମସ୍ତେ କୌତୂହଳୀ ହେବା ସ୍ୱାଭାବିକ।

ହିନ୍ଦୁ ପୁରାଣଲେଖକମାନେ ସମ୍ଭବତଃ ସର୍ବପ୍ରଥମ ମହାଶୂନ୍ୟ ସମ୍ବନ୍ଧରେ ସେହିଭଳି କୌତୂହଳୀ ହୋଇ କେତେ କ'ଣ କଳ୍ପନା କରି ଯାଇଥିଲେ। ସ୍ୱର୍ଗ, ବୈକୁଣ୍ଠପୁର ଆଦି ସମ୍ବନ୍ଧରେ ନାନା କଳ୍ପନା କରି ସେଗୁଡ଼ିକର ଅବସ୍ଥିତି ଦୂର ମହାଶୂନ୍ୟ ଭିତରେ ବୋଲି ସୂଚାଇବାକୁ ସେମାନେ ପଶ୍ଚାତ୍‌ପଦ ହୋଇ ନ ଥିଲେ। ପୃଥିବୀ ବା ମର୍ତ୍ତ୍ୟରୁ ସ୍ୱର୍ଗ ଓ ସ୍ୱର୍ଗରୁ ଅନ୍ୟ ଗ୍ରହ ଉପଗ୍ରହକୁ ଯାଇ ବୁଲାଚଲା କରିବା ସର୍ବପ୍ରଥମ କଳ୍ପନା ସମ୍ଭବତଃ ହିନ୍ଦୁ ଲେଖକମାନଙ୍କର। ମୁନିରାଜ ନାରଦଙ୍କର ଢିଙ୍କି ଉପରେ ଚଢ଼ି ମହାଶୂନ୍ୟରେ ଭ୍ରମଣ ହିନ୍ଦୁ ପୁରାଣ ଲେଖକମାନଙ୍କର କଳ୍ପନାର ଏକ ଚୂଡ଼ାନ୍ତ ନିଦର୍ଶନ କହିଲେ ଅତ୍ୟୁକ୍ତି ହେବ ନାହିଁ। ଖାଲି ସେତିକି ନୁହେଁ, ଢିଙ୍କିର ଆକାର ସହିତ ଆଧୁନିକ ରକେଟ ଆକାରର ଯଥେଷ୍ଟ ସାମଞ୍ଜସ୍ୟ ଥିବାରୁ ହଜାର ହଜାର ବର୍ଷ ପୂର୍ବର ହିନ୍ଦୁ ପୁରାଣକାରମାନଙ୍କର କଳ୍ପନାକୁ ଶତ ନମସ୍କାର ଜଣାଇବାକୁ ଇଚ୍ଛା ହୁଏ। ପ୍ରହେଳିକାମୟ ମହାଶୂନ୍ୟ ଭିତରକୁ ଯାଇ ସେଠାକାର ଅବସ୍ଥା ଜାଣିବା ପାଇଁ ସମ୍ଭବତଃ ଆମ ପୂର୍ବପୁରୁଷମାନେ ସର୍ବପ୍ରଥମେ ଆଗ୍ରହୀ ହୋଇପଡ଼ିଥିଲେ ଓ ସେହି ଆଗ୍ରହର ସାକ୍ଷୀସ୍ୱରୂପ ପୁରାଣବର୍ଣ୍ଣିତ ସେହିସବୁ କାହାଣୀ ବିଦ୍ୟମାନ।

ତେବେ ବୈଜ୍ଞାନିକ ଭିତ୍ତିରେ ମହାଶୂନ୍ୟ ଭିତରକୁ ଯିବାର ସର୍ବପ୍ରଥମ ଆଲୋଚନା ଏହି ପୃଥିବୀପୃଷ୍ଠରେ ଦେଖାଦେଇଥିଲା ବହୁ ପରେ। ବହୁ ଲେଖକ ଓ ବୈଜ୍ଞାନିକ ବିଜ୍ଞାନ ସମ୍ବନ୍ଧୀୟ ପୁସ୍ତକ ଓ ଉପନ୍ୟାସ ଲେଖି ସାରା ମଣିଷ ତଥା ବିଜ୍ଞାନୀ ସମାଜର ଦୃଷ୍ଟି ଏହି ମହାଶୂନ୍ୟ ଭ୍ରମଣ ଆଡ଼କୁ ଘେନି

ଆସିଥିଲେ । ମହାଶୂନ୍ୟ ଭ୍ରମଣ ପୃଥିବୀପୃଷ୍ଠ ବା ଆକାଶ ମଣ୍ଡଳର ଭ୍ରମଣ ଭଳି ସେତେ ସହଜସାଧ୍ୟ ନୁହେଁ । ପୃଥିବୀର ମାଧ୍ୟାକର୍ଷଣ ଶକ୍ତିକୁ ଜୟକରି ପୃଥିବୀ ଛାଡ଼ି ମହାଶୂନ୍ୟକୁ ଯିବା କିଛି ଖେଳଘର କଥା ନୁହେଁ । ବୈଜ୍ଞାନିକ-ମାନେ ବର୍ଷ ବର୍ଷ ଧରି ଚେଷ୍ଟାକରି ମଧ୍ୟ ପୃଥିବୀପୃଷ୍ଠକୁ ଛାଡ଼ି ମହାଶୂନ୍ୟର ଅଧିକ ଅଭ୍ୟନ୍ତରକୁ ଯାଇପାରି ନାହାନ୍ତି ।

କିନ୍ତୁ ସୋଭିଏଟ୍ ବୈଜ୍ଞାନିକମାନେ ଗତ ଅକ୍ଟୋବର ମାସ ୪ ତାରିଖ ଦିନ ଯେତେବେଳେ ମହାଶୂନ୍ୟରେ ସର୍ବପ୍ରଥମ କୃତ୍ରିମ ଉପଗ୍ରହ ବା ସ୍ପୁଟ୍‌ନିକ୍ ଉଡ଼ାଇ ପାରିଥିଲେ ଓ ଏହାର ଏକମାସ ପରେ 'ଲାଇକା' ନାମକ କୁକୁରକୁ ବସାଇ ଯେଉଁ ଆଉ ଏକ କୃତ୍ରିମ ଉପଗ୍ରହ ମହାଶୂନ୍ୟକୁ ପଠାଇ ପୃଥିବୀ ଚାରିପାଖରେ ଘୂରାଇ ପାରିଥିଲେ ଓ ସେହି କୁକୁର ମହାଶୂନ୍ୟ ଭିତରେ କିଛିଦିନ ଜୀବନ୍ତ ରହି ପୃଥିବୀରେ ଯେପରି ଭାବରେ ଘୁଞ୍ଚାଖେଳାଇ ପାରିଲା, ସେତେବେଳେ ମହାଶୂନ୍ୟ ଭ୍ରମଣ ସମ୍ବନ୍ଧରେ ଆଉ ଯେଉଁ କେତେକ ସନ୍ଦେହ ଥିଲା, ତାହା ପାଣି ଫୋଟକା ଭଳି ମିଳାଇ-ଯିବାକୁ ବସିଲା । ନାନା କୌଶଳ ଓ ଉପାୟ ଅବଲମ୍ବନପୂର୍ବକ ଉପଯୁକ୍ତ ମହାଶୂନ୍ୟ ଯାନ ତିଆରି କରି ପାରିଲେ ସେହି ଯାନରେ ମହାଶୂନ୍ୟ ଭିତରକୁ ଯାଇ ଘୂରିଆସିବା ମଣିଷ ପକ୍ଷରେ ଆଉ ଅସମ୍ଭବ ହୋଇ ରହିବ ନାହିଁ ।

ମହାଶୂନ୍ୟ ଭ୍ରମଣ ବୋଇଲେ ବୈଜ୍ଞାନିକମାନେ ଗ୍ରହାନ୍ତର ଅଭିଯାନକୁ ହିଁ ସାଧାରଣତଃ ବୁଝିଥାନ୍ତି । ପୃଥିବୀପୃଷ୍ଠରୁ ମହାଶୂନ୍ୟ ଦେଇ ମଙ୍ଗଳ, ଶୁକ୍ର ଆଦି ଗ୍ରହକୁ ଯାଇ ସେଠା ଅବସ୍ଥା ଆବିଷ୍କାର କରିବା ବହୁଦିନ ଧରି ବୈଜ୍ଞାନିକମାନଙ୍କର ଏକ ଅପୂର୍ବ ସ୍ପୃହା ହୋଇ ଆସିଅଛି । କିନ୍ତୁ ପୃଥିବୀକୁ ପୁରାପୁରି ନ ଛାଡ଼ିଲା ପର୍ଯ୍ୟନ୍ତ ଏପରିକି ପୃଥିବୀର ମାଧ୍ୟାକର୍ଷଣ ଶକ୍ତିକୁ ପରାଭୂତ ନ କଲା ପର୍ଯ୍ୟନ୍ତ ସେହିସବୁ ଗ୍ରହକୁ ଯିବା ସମ୍ଭବପର ନୁହେଁ । ଗଣନାଦ୍ୱାରା ନିର୍ଣ୍ଣୀତ ଘଣ୍ଟାକୁ ୨୫୦୦୦ ମାଇଲ ବେଗରେ ପୃଥିବୀକୁ ଛାଡ଼ିବାକୁ ପଡ଼ିବ । ତା' ନ ହେଲେ ପୃଥିବୀକୁ ଛାଡ଼ିବା ସମ୍ଭବପର ହୋଇ ନ ପାରେ । ପୁନଶ୍ଚ ଘଣ୍ଟାକୁ ପଚିଶ ହଜାର ମାଇଲ ବେଗରେ ପୃଥିବୀ ଛାଡ଼ିବା କିଛି ଖେଳଘର କଥା ନୁହେଁ । ତେଣୁ ଏହି ପ୍ରଧାନ ଅସୁବିଧାଟିକୁ ଦୂର ନ କଲେ ଯେତେ ପ୍ରକାର ମହାଶୂନ୍ୟ ଯାନର ଆଶ୍ରୟ ନେଲେ ମଧ୍ୟ ଗ୍ରହାନ୍ତର ଅଭିଯାନ ଏକ ସ୍ୱପ୍ନ ହୋଇ ରହିଥିବ ।

ଗଣନାଦ୍ୱାରା ଜଣାଯାଇଛି ଯେ, ଚନ୍ଦ୍ରମଣ୍ଡଳରୁ ଅନ୍ୟାନ୍ୟ ଗ୍ରହ ଉପଗ୍ରହ ଅଭିମୁଖେ ଯିବା ଯେତେ ସହଜ, ପୃଥିବୀ ପୃଷ୍ଠରୁ ଯିବା ସେତେ ସହଜ ନୁହେଁ । ତେଣୁ ଭବିଷ୍ୟତରେ ଯଦି ଗ୍ରହାନ୍ତର ଅଭିଯାନ କେବେ କୃତକାର୍ଯ୍ୟ ହୁଏ, ତେବେ ତାହା ଏହି ଚନ୍ଦ୍ରମଣ୍ଡଳରୁ ହିଁ ଯେ ସମ୍ଭବପର ହେବ, ଏଥିରେ ସନ୍ଦେହ ନାହିଁ । ପୁନଶ୍ଚ ପୃଥିବୀପୃଷ୍ଠରୁ ଚନ୍ଦ୍ରମଣ୍ଡଳକୁ ଯିବା ଅନ୍ୟ ଗ୍ରହ ଉପଗ୍ରହମାନଙ୍କ ଭଳି ସେତେ କଷ୍ଟକର ନୁହେଁ; କାରଣ ଚନ୍ଦ୍ର ହେଉଛି ଆମ ପୃଥିବୀର ଉପଗ୍ରହ ଓ ଏହି ଉପଗ୍ରହରେ ପହଞ୍ଚିବା ପାଇଁ ଆମକୁ ଉପରୋକ୍ତ ଖ୍ରୀମ ବେଗରେ ଯିବାକୁ ପଡ଼ିବ ନାହିଁ । ପୁନଶ୍ଚ ଚନ୍ଦ୍ର-ମଣ୍ଡଳକୁ ଯିବା ପାଇଁ ବର୍ତ୍ତମାନ ଦୁଇଟି ଉପାୟ ଅଛି । ପ୍ରଥମତଃ ପୃଥିବୀ ଚାରିପାଖରେ କୃତ୍ରିମ ଉପଗ୍ରହ ଘୂରାଇ ଓ ଏହି କୃତ୍ରିମ ଉପଗ୍ରହକୁ ମହାଶୂନ୍ୟ ଷ୍ଟେସନ ଭାବରେ ବ୍ୟବହାର କରି ରକେଟ ଯାନ ସାହାଯ୍ୟରେ ଚନ୍ଦ୍ରମଣ୍ଡଳକୁ ଯିବା ସମ୍ଭବପର । ତା' ନ କରି ଯେଉଁ ତ୍ରି-ସୋପାନ ପଦ୍ଧତି ସାହାଯ୍ୟରେ ମହାଶୂନ୍ୟରେ କୃତ୍ରିମ ଉପଗ୍ରହ ସୃଷ୍ଟି କରାଯାଏ, ସେହିଭଳି ପଞ୍ଚ-ସୋପାନ ରକେଟପଦ୍ଧତି ଅବଲମ୍ବନ କଲେ ପୃଥିବୀପୃଷ୍ଠରୁ ସିଧାସଳଖ ଯାଇ ଚନ୍ଦ୍ରମଣ୍ଡଳରେ ପହଞ୍ଚିହେବ । ଶୁଣାଯାଏ, ସୋଭିଏଟ୍ ବୈଜ୍ଞାନିକମାନେ ଏହି ଦ୍ୱିତୀୟ ପଦ୍ଧତି ଅବଲମ୍ବନ କରି ଚନ୍ଦ୍ରମଣ୍ଡଳରେ ପହଞ୍ଚିବାକୁ ଚେଷ୍ଟା ଚଳାଇଛନ୍ତି ।

ଚନ୍ଦ୍ରମଣ୍ଡଳରେ ପହଞ୍ଚିପାରିଲେ ଚନ୍ଦ୍ରମଣ୍ଡଳକୁ ଏକ ପ୍ରାକୃତିକ ମହାଶୂନ୍ୟ ଷ୍ଟେସନ ଭାବରେ ବ୍ୟବହାର କରି ସେଠାରୁ ଅନ୍ୟ ସବୁ ଗ୍ରହ ଉପଗ୍ରହକୁ ଯିବା ସମ୍ଭବପର ହେବ । ତେଣୁ ସୋଭିଏଟ୍ ବୈଜ୍ଞାନିକମାନେ ବର୍ତ୍ତମାନ ସେମାନଙ୍କର ସମସ୍ତ ଶକ୍ତିକୁ କେନ୍ଦ୍ରୀଭୂତ କରି ଏହି ଚନ୍ଦ୍ରମଣ୍ଡଳ ଅଭିଯାନରେ କୃତକାର୍ଯ୍ୟ ହେବାପାଇଁ ନାନା ଚେଷ୍ଟା ଚଳାଇଛନ୍ତି । ସେମାନେ ଚନ୍ଦ୍ରମଣ୍ଡଳରେ ପହଞ୍ଚି କିପରି ଭାବରେ ସେହି ଜୀବଜଗତଶୂନ୍ୟ ଉପଗ୍ରହରେ ପୁଣି ଜୀବଜଗତ୍ ବିସ୍ତାର କରିପାରିବେ, ତାହାର ଯୋଜନା ଏବେ କେତେକ ସୋଭିଏଟ୍ କାଗଜରେ ପ୍ରକାଶ ପାଇଛି ।

ସେମାନଙ୍କ ଯୋଜନା ଅନୁସାରେ ଯେଉଁ ସର୍ବପ୍ରଥମ ରକେଟ୍ ପଞ୍ଚ-ସୋପାନପଦ୍ଧତି ଅନୁସରଣ କରି ଚନ୍ଦ୍ରମଣ୍ଡଳ ଅଭିମୁଖେ ଯିବ, ସେହି ରକେଟରେ କୌଣସି ମଣିଷ ନ ଯାଇ ଏକ ରେଡ଼ିଓଚାଳିତ ସ୍ୱୟଂକ୍ରିୟ

ଯନ୍ତ୍ରମଣିଷଟିଏ ଯିବ । ଚନ୍ଦ୍ରପୃଷ୍ଠରେ ରକେଟ ପହଞ୍ଚିଲାକ୍ଷଣି ରକେଟ ଭିତରୁ ଯନ୍ତ୍ରମଣିଷ ମନକୁ ମନ ବାହାରି ଚନ୍ଦ୍ରପୃଷ୍ଠରେ ବୁଲିବୁଲିବ । ଚନ୍ଦ୍ରମଣ୍ଡଳର ଆଭ୍ୟନ୍ତରୀଣ ଅବସ୍ଥା, ସେଠାକାର ଉତ୍ତାପ, ଉପରିଭାଗର ଶିଳାସ୍ତର ଇତ୍ୟାଦିକୁ ପର୍ଯ୍ୟବେକ୍ଷଣ କରିବାପାଇଁ ସେଥିରେ ବିଭିନ୍ନ ପ୍ରକାର ସ୍ୱୟଂକ୍ରିୟ ଯନ୍ତ୍ରପାତି ସନ୍ନିବେଶିତ ହୋଇଥିବ ।

ଚନ୍ଦ୍ରମଣ୍ଡଳର ପାହାଡ଼ ପର୍ବତ ଉପରେ ଚଡ଼ି, ଓହ୍ଲାଇ ଏହି ସ୍ୱୟଂଚାଳିତ ଯନ୍ତ୍ରମଣିଷ ଅନବରତ ଗତିକରି ବୁଲୁଥିବ । ଚନ୍ଦ୍ରମଣ୍ଡଳରେ କେଉଁଠି ପ୍ରାନ୍ତର, କେଉଁଠି ଗିରିସଙ୍କଟ, କେଉଁଠି ଅବା ଗଭୀର ଗହ୍ୱର ଅଛି, ସେସବୁର ଠିକଣଠି ଖବର ସେହି ସ୍ୱୟଂଚାଳିତ ଯନ୍ତ୍ରମଣିଷ ଦ୍ୱାରା ପୃଥିବୀପୃଷ୍ଠକୁ ପ୍ରେରିତ ହେଉଥିବ । ଚନ୍ଦ୍ରମଣ୍ଡଳକୁ ଚଢ଼ାଉ କରିବା ଦିଗରେ ଏହି ଯନ୍ତ୍ରମଣିଷ ହେବ ସର୍ବପ୍ରଥମ ଅଗ୍ରଦୂତ । ଏହା ସାହାଯ୍ୟରେ ଚନ୍ଦ୍ରମଣ୍ଡଳର ବହୁ ଠିକଣଠି ଖବର ପାଇସାରିଲା ପରେ ଆହୁରି ବହୁ ରକେଟ ଛଡ଼ାଯିବ ପୃଥିବୀପୃଷ୍ଠରୁ ଚନ୍ଦ୍ରଲୋକ ଅଭିମୁଖେ । ଚନ୍ଦ୍ରମଣ୍ଡଳରେ ଯେଉଁଠି ଏହି ଯନ୍ତ୍ରମଣିଷ ଘୁରି ଘୁରି ବିଚରଣ କରୁଥିବ, ସେହି ଅଞ୍ଚଳରେ ଏହି ରକେଟଗୁଡ଼ିକ ଅବତରଣ କରିବେ । ଏହିସବୁ ରକେଟରେ ମଣିଷର ଖାଦ୍ୟ, ବସ୍ତ୍ର, ଜାଳେଣି ଦ୍ରବ୍ୟ, ବାୟୁ, ଜଳ ଆଦି ଯାବତୀୟ ଦରକାରୀ ପଦାର୍ଥ ଚନ୍ଦ୍ରମଣ୍ଡଳକୁ ପ୍ରେରିତ ହେବ । ଚନ୍ଦ୍ରମଣ୍ଡଳରେ ମଣିଷର ପ୍ରଥମ ବସତି ନିମନ୍ତେ ଯାବତୀୟ ସରଞ୍ଜାମ ଏହି ପୃଥିବୀରୁ ଯାଇ ପହଞ୍ଚିସାରିଲା ପରେ ପୃଥିବୀପୃଷ୍ଠରୁ ପ୍ରଥମ ଯାତ୍ରୀ ଦଳଙ୍କୁ ଧରି ରକେଟ ଯାନ ଛୁଟିବ ଚନ୍ଦ୍ରଲୋକ ଅଭିମୁଖେ । ସେଠାରେ ଏହି ଯାତ୍ରୀମାନେ ଓହ୍ଲାଇ ପୂର୍ବରୁ ପହଞ୍ଚିଥିବା ଜିନିଷପତ୍ରକୁ ଯୋଗାଡ଼ କରିନେଇ ସେମାନେ ଚନ୍ଦ୍ରପୃଷ୍ଠରେ ଏକ ଆଧୁନିକ ସହର ପ୍ରତିଷ୍ଠା କରିବେ ।

ଏହି ସହରର ଅଧିବାସୀମାନେ ପ୍ରଥମତଃ ଚନ୍ଦ୍ରମଣ୍ଡଳରେ କିଏ କି ଧାତୁ ଓ ଖଣିଜଦ୍ରବ୍ୟ ଅଛି, ତାହା ଖୋଜି ବୁଲିବେ । ସେଠାରେ ଯଦି ଖୁବ୍ ମୂଲ୍ୟବାନ ଖଣିଜଦ୍ରବ୍ୟ ମିଳେ, ତେବେ ସେହି ଖଣିଜଦ୍ରବ୍ୟରୁ ଧାତୁ ନିଷ୍କାସନ ପାଇଁ ସେଠାରେ ନାନା କଳକାରଖାନା ପ୍ରତିଷ୍ଠିତ ହେବ । ଚନ୍ଦ୍ରମଣ୍ଡଳରେ ଏହିଭଳି ଭାବରେ ଧୀରେ ଧୀରେ ବସତିସ୍ଥାପନ କରିବା ସଙ୍ଗେ ସଙ୍ଗେ ସେଠାରୁ ମଙ୍ଗଳ, ଶୁକ୍ର ଆଦି ଗ୍ରହକୁ ଯିବା ପାଇଁ ଅଭିଯାନ

ଆରମ୍ଭ କରାଯିବ । ସେହି ସବୁ ଗ୍ରହାନ୍ତର ଅଭିଯାନ ପାଇଁ ଯାହା କିଛି ଦରକାର, ତାହା ପୃଥିବୀରୁ ଚନ୍ଦ୍ରମଣ୍ଡଳକୁ ନିଆ ନ ଯାଇ ସେଗୁଡ଼ିକ ଚନ୍ଦ୍ରମଣ୍ଡଳରେ ତିଆରି କରିବା ପାଇଁ ବ୍ୟବସ୍ଥା କରାଯିବ ।

ଏହିଭଳି ଭାବରେ ବୈଜ୍ଞାନିକମାନେ ଯଦି ଚନ୍ଦ୍ରମଣ୍ଡଳରେ ବସତି ସ୍ଥାପନ କରନ୍ତି, ତେବେ ସେଠାରୁ ମହାଶୂନ୍ୟ ଭ୍ରମଣ ବା ଗ୍ରହାନ୍ତର ଅଭିଯାନ ଅତି ସହଜସାଧ୍ୟ ହେବ । ଚନ୍ଦ୍ରମଣ୍ଡଳରେ ଏକାଧିକ ଅତ୍ୟାଧୁନିକ ସହର ପ୍ରତିଷ୍ଠା କରି ସେଠାରୁ ନାନା ରକେଟ ଯାନ ସାହାଯ୍ୟରେ ଅନନ୍ତ ବିଶ୍ୱରେ ବିଚରଣ କରି ମଣିଷ ଯେ ଦିନେ ସାରା ସୌରଜଗତ ତଥା ବିଶ୍ୱରେ ବିଜୟ୍ୱବାନା ଉଡ଼ାଇବ, ଏ ଆଶା ଆମ୍ଭମାନଙ୍କର ଆଜିଠାରୁ ପୋଷଣ କରିବା ଉଚିତ......।"

ବକ୍ତୃତା ପରେ ମିସ୍ ସେନ୍ ଓ ଅଧ୍ୟାପକ ମଞ୍ଚ ଉପରୁ ଓହ୍ଲାଇ ଆସୁ ଆସୁ ମିସ୍ ସେନ ଅଧ୍ୟାପକଙ୍କୁ ଲକ୍ଷ୍ୟକରି କହିଲେ, "ଆପଣଙ୍କ ବକ୍ତୃତା ଆଜି ଖୁବ୍ ଚମତ୍କାର ହେଲା ମନୋଜବାବୁ ! ଆପଣଙ୍କର ଏହି ପାଣ୍ଡିତ୍ୟପୂର୍ଣ୍ଣ ବକ୍ତୃତା ଶୁଣିବା ପାଇଁ ସହରରୁ କେତେ ଭଦ୍ରମହିଳା ଧାଇଁ ଆସିଥିଲେ, ଦେଖିଲେ ତ ? କାଲି ସାରା ସହରରେ ପ୍ରଚାରିତ ହୋଇଯିବ ଆପଣଙ୍କ ବକ୍ତୃତାର ଅପୂର୍ବ ପ୍ରଶଂସା ।"

ମିସ୍ ସେନଙ୍କର ଏହି ତୋଷାମଦପୂର୍ଣ୍ଣ କଥା ଉପରେ ଅଧ୍ୟାପକଙ୍କର ଆସ୍ଥା ନ ଥିଲେହେଁ ସେ ତାଙ୍କର କହିବା ଭଙ୍ଗୀରେ ପୂରାପୂରି ମୁଗ୍ଧ ହୋଇପଡ଼ିଥାନ୍ତି । ପ୍ରଶଂସା ଓ ଜୟମାଲ୍ୟର ଉତ୍ତୁଙ୍ଗ ଶିଖରରେ ଯେ ବିଦ୍ୟମାନ, ଏଇ ସାମାନ୍ୟ ପ୍ରଶଂସାରେ ଯେ ସେ ଗୌରବ ଅନୁଭବ କରିବେ, ଏହା ମିସ୍ ସେନ୍ ବୁଝିଥିଲେହେଁ ଏଇ ସାମାନ୍ୟ ମୁହୂର୍ତ୍ତିଟି ପାଇଁ ସେ ଅଧ୍ୟାପକ ପଟ୍ଟନାୟକଙ୍କ ପ୍ରଶଂସାରେ ପାଗଳ ହୋଇ ଉଠିଥିଲେ, ହୃଦୟର ଏକ ଅଜ୍ଞାତ ଦୁର୍ବଳତା ହେତୁ ।

ଯଦିଚ ବକ୍ତୃତା ଶେଷ ହୋଇଥାଏ, କିନ୍ତୁ ହଲ ଓ ବାରଣ୍ଡାରୁ ଗହଳ ପୁରାପୂରି ଭାଙ୍ଗି ନ ଥାଏ । ମିସ୍ ସେନ ଯେତେବେଳେ ଅଧ୍ୟାପକଙ୍କୁ ଏହିଭଳି ତୋଷାମଦ ବାଣୀ ଶୁଣାଉଥାନ୍ତି, ଯେତେବେଳେ ସେ ଦୁହିଁଙ୍କୁ ଅଲକ୍ଷ୍ୟରେ ଥାଇ ଲକ୍ଷ୍ୟ କରୁଥାନ୍ତି ଅମିତା ଦେବୀ । ମାଳ ଚଶମା ଓ ପାଶ୍ଚାତ୍ୟ

ପୋଷାକର ଛଦ୍ମବେଶତଳେ ସେ ଲକ୍ଷ୍ୟ କରୁଥିଲେ ଅଧ୍ୟାପକ ଓ ମିସ୍ ସେନଙ୍କ କଥାବାର୍ତ୍ତା ଓ ଭାବଭଙ୍ଗୀକୁ ।

ଅଧ୍ୟାପକ ଗେଟ ପାଖରେ ପହଞ୍ଚି ମିସ ସେନଙ୍କଠାରୁ ବିଦାୟ ନେବାକୁ ଯାଉଛନ୍ତି, ହଠାତ୍ ମିସ୍ ସେନ ଅଧ୍ୟାପକଙ୍କ ହାତ ଧରି ଟାଣିଲେ ।

"ଆପଣଙ୍କୁ ଆଜି ମୋ ସାଙ୍ଗରେ ଆମ ଘରକୁ ଯିବାକୁ ପଡ଼ିବ ମନୋଜବାବୁ ! ସେଠାରୁ କ୍ଲବ୍ ଅଭିମୁଖେ ।" ନିଜର ମାଦକଭରା ମୃଗାକ୍ଷି ଦୁଇଟିକୁ ନଚାଇ ଅନୁରୋଧ କଲେ ମିସ୍ ସେନ, "ନ ଗଲେ କିନ୍ତୁ ମୋ ମନ ଖୁବ୍ କଷ୍ଟ ହେବ ମନୋଜବାବୁ !"

"କ୍ଲବ୍ ?" ମିସ୍ ସେନଙ୍କ ଚମ୍ପକ କଳିକାନିନ୍ଦୀ ଅଙ୍ଗୁଳିଗୁଡ଼ିକୁ ନିଜ ହାତମୁଠାରେ ଚିପିଧରି ହଲଉଁ ହଲଉଁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ଅଧ୍ୟାପକ ।

"ହଁ, କ୍ଲବ ! ଉତ୍ସାହପୂର୍ଣ୍ଣ ଦୃଷ୍ଟିରେ ଅଧ୍ୟାପକଙ୍କ ଆଡ଼କୁ ଅନାଇ ମିସ୍ ସେନ କହିଲେ । ପରମୁହୂର୍ତ୍ତରେ ହଠାତ୍ ଚମକିପଡ଼ି "ଓଃ, ଆପଣ ପରା ପୂରାପୂରି ନିରାମିଷାଶୀ, କେବେ କ୍ଲବକୁ ଯାଆନ୍ତିନି ପରା ! ମୋର ସେକଥା ମୋଟେ ଖିଆଲ ନ ଥିଲା ମନୋଜବାବୁ !

ପୁଣି ପର ମୁହୂର୍ତ୍ତରେ ଗୁଟୁଲିଆ ନୟନରେ ବିଦ୍ୟୁତ୍ ଚଞ୍ଚଳ କଟାକ୍ଷପାତ କରି କହିଲେ, "କିନ୍ତୁ ଦିନରାତି ଘରେ ବସି ଗବେଷଣା କଲେ ଜୀବନର ଉଦ୍ଦେଶ୍ୟ ସାଧିତ ହୁଏନାହିଁ, ମନୋଜବାବୁ ! ଗବେଷଣା ସଙ୍ଗେ ସଙ୍ଗେ ଜୀବନକୁ ଉପଭୋଗ କରିବା ପ୍ରତ୍ୟେକ ଗବେଷକର ଆଦର୍ଶ ହେବା ଉଚିତ । ପୂର୍ବକାଳର ବୈଜ୍ଞାନିକମାନଙ୍କ ଭଳି ବିନରାତି କବାଟ କିଳି, ମଣିଷସମାଜଠାରୁ ଦୂରରେ ରହି ଗବେଷଣା କରିବା ଯୁଗ ଆଉ ନାହିଁ । ଗବେଷଣା ହୋଇପାରେ ବୈଜ୍ଞାନିକର ଆଦର୍ଶ; କିନ୍ତୁ ତାହା କୌଣସି ଜୀବନର ଏକମାତ୍ର ଉଦ୍ଦେଶ୍ୟ ହେବା ଉଚିତ ନୁହେଁ । ଜୀବନଟାକୁ ଉପଭୋଗ ନ କରି ଅବହେଳା କରିବା ମାନବିକତା ଦୃଷ୍ଟିରୁ ମହାପାପ ଛଡ଼ା ଆଉ କିଛି ନୁହେଁ ମନୋଜବାବୁ ! ଆପଣ ବିଲାତରେ ଏତେଦିନ ଧରି ଶହ ଶହ କ୍ଲବ ମଝିରେ ରହି କ୍ଲବ ଯିବାଟାକୁ କିପରି ପସନ୍ଦ କରିପାରିଲେନି, ସେଇଟା

ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ଆପଣ ସେଠି ସିନା ବିଲାତି କ୍ଲବ ଯିବାଟାକୁ ଘୃଣା କରୁଥିଲେ, କିନ୍ତୁ ଏଠି ଯେ ପୂରାପୂରି ଭାରତୀୟ କ୍ଲବ୍, ଅର୍ଥାତ୍ ସେଣ୍ଟ ପାର୍ସେଣ୍ଟ ଭାରତୀୟ, ସେଥିରେ ଆଉ ଆପତ୍ତି କାହିଁକି ?"

"ନାହିଁ ମିସ୍ ସେନ, ମୋତେ କ୍ଷମାକର । ମୁଁ କ୍ଲବ୍‌କୁ ଯାଇ-ପାରିବିନି । ବରଂ ଚାଲ, ମୁଁ ତୁମ ଘରଆଡ଼ୁ ବୁଲି ଆସିବି । .

"ଏମିତି ପଛେଇଲେ କ'ଣ ଚଳିବ, ଡକ୍‌ଟର ପଟ୍ଟନାୟକ ? ଜୀବନଟାକୁ ଏମିତି ଆମୋଦଶୂନ୍ୟ ଭାବରେ ଛାଡ଼ିଦେଲେ ମନୁଷ୍ୟତ୍ୱକୁ ହତ୍ୟାକରିବା ଛଡ଼ା ଯେ ଆଉ କିଛି ହେବନି । ହେଉ, ଆଗେ ଚାଲନ୍ତୁ ଆମ ଘରକୁ । ସେଠାରେ ଠିକ୍ କରିବା ଆମର ଆଜିର ସାନ୍ଧ୍ୟ ପ୍ରୋଗ୍ରାମ ।"

ଅଧ୍ୟାପକ ଓ ମିସ୍ ସେନ୍ ଗେଟ୍ ପାଖରେ ପହଞ୍ଚିଲାବେଳକୁ ମିସ୍ ସେନ୍‌ଙ୍କ ଗାଡ଼ି ଥୁଆ ହୋଇଥାଏ ଠିକ୍ ଫାଟକକୁ ଲାଗି । ମିସ୍ ସେନ୍ ଗାଡ଼ି ନିକଟକୁ ଯାଇ ଦୁଆର ଖୋଲି ଇଙ୍ଗିତ ଦେଲେ ଅଧ୍ୟାପକଙ୍କୁ ଗାଡ଼ିରେ ବସିବା ପାଇଁ ।

ମିସ୍ ସେନ୍‌ଙ୍କୁ ନିଜ ଗାଡ଼ି ଖୋଲିବା ଦେଖି ଅଧ୍ୟାପକ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ମୋ ଗାଡ଼ି ?"

"ଆପଣଙ୍କ ଗାଡ଼ିକୁ ମୁଁ ତ ଆପଣଙ୍କ ଘରକୁ ପଠାଇ ଦେଇଛି । ଆପଣ ପରା କହୁଥିଲେ ମିସେସ୍ ପଟ୍ଟନାୟକ ଆଜି କେଉଁଆଡ଼େ ବୁଲିଯିବେ ବୋଲି । ସେଥିପାଇଁ ଆପଣଙ୍କ ଗାଡ଼ି ଓ ଡ୍ରାଇଭରକୁ ଆପଣଙ୍କ ଘର ଅଭିମୁଖେ ପଠାଇଦେଇ ଆମର କ୍ଲବ୍ ଯିବା ବନ୍ଦୋବସ୍ତଟା କରିଦେଇ ସାରିଛି ।"

ମିସ୍ ସେନ୍‌ଙ୍କ ଏହି ଅଭିନୟକୁ ଅଲକ୍ଷ୍ୟରେ ଥାଇ ଲକ୍ଷ୍ୟ କରୁଥାନ୍ତି ଅମିତା ଦେବୀ । ନିଜ ସ୍ୱାମୀଙ୍କୁ ନିଜଠାରୁ ଛଡ଼ାଇନେବାର ଏ ହୀନ ପ୍ରବୃତ୍ତି ଦେଖି ମନେ ମନେ ମିସ୍ ସେନ୍‌ଙ୍କ ପ୍ରତି ତାଙ୍କର ଘୃଣା ଜାଗିଉଠିଲା । ବିଲାତ, ଆମେରିକାରୁ ପାଶ୍ କରି, ଆଧୁନିକା ଓ ପ୍ରଗତିଶୀଳା ନାଁରେ ନିର୍ଲଜ୍ଜା ବିବାହିତା ସ୍ତ୍ରୀଙ୍କଠାରୁ ସେମାନଙ୍କ ସ୍ୱାମୀଙ୍କୁ ଛଡ଼ାଇ ନେବାର ଅପଚେଷ୍ଟା କି ଘୃଣ୍ୟ, ସେ ଭାବି ପାରିଲେନି । ବିବାହ ନ କରି ଏଠି

ସେଠି ଯୌନତୃଷା ମେଣ୍ଟାଇବାର ଆଶା କି ଜଘନ୍ୟ, କି ପାଶବିକ ହୋଇପାରେ, ଭାବିଲାବେଳକୁ ତାଙ୍କ ଦେହ ଶିହରି ଉଠିଲା । ମନ ହେଉଥାଏ, ସେ ହିଂସ୍ରବାଘୁଣୀ ପରି ମିସ୍ ସେନ୍‌ଙ୍କ ଉପରକୁ କୁଦିପଡ଼ି ତାଙ୍କୁ ଏପରି ଭାବରେ କ୍ଷତ ବିକ୍ଷତ କରିପକାନ୍ତେ କି, ଯା' ଫଳରେ ସେ ଏଭଳି ସ୍ୱାମୀ-ଅପହରଣ ଚେଷ୍ଟାରୁ ଚିରଦିନ ପାଇଁ ବିରତ ହୁଅନ୍ତେ । ଅମିତାଦେବୀ ଅଦୂରରେ କାନ୍ଥକୁ ଆଉଜି ଏହିଭଳି କେତେ କଅଣ ଭାବି ଯାଉଥାନ୍ତି, ଗେଟ ପାଖରେ ଥିବା ମଟରର ଚାଲିଯିବା ଶବ୍ଦରେ ହଠାତ୍ ଚମକିପଡ଼ିଲେ, ଦେଖିଲେ ମିସ୍ ସେନ୍ ଓ ଅଧ୍ୟାପକ ପାଟଙ୍କୁ ପାଖ ଲଗାଲଗି ହୋଇ ବସି ହସଖୁସି କଥାବାର୍ତ୍ତା ଭିତରେ ଅଦୃଶ୍ୟ ହୋଇ-ଗଲେ । ମିସ୍ ସେନଙ୍କର ନିରାଭରଣ ବାମହସ୍ତ ଅଧ୍ୟାପକଙ୍କ ବେକକୁ ଅଳଂକୃତ କରିଥାଏ ।

ଏହି ଦୃଶ୍ୟ ଦେଖି ଅମିତା ଦେବୀଙ୍କ ଆଖିରୁ ଟପଟପ ଲୁହ ଗଡ଼ିପଡ଼ିଲା ସେହି ରୁକ୍ଷ ଚଟାଣ ଉପରେ । ସେ ଆଖିରୁ ଲୁହତକ ପୋଛି ଚାଲିଲେ ଗେଟ୍ ପାର ହୋଇ, ଆଶା କୌଣସି ଭଡ଼ା ଟେକ୍‌ସି କରି ଘରକୁ ଫେରିଯିବେ । ତାଙ୍କର ସୁଖର ସଂସାର କପରି ଠିକ ଠିକ ହୋଇ ଭାଙ୍ଗିଯାଇ, ଧୂଳିସାତ୍ ହୋଇଯାଉଛି, ସେ ଭାବୁ ଭାବୁ ଅସ୍ଥିର ହୋଇ-ଉଠିଲେ ।

ଏହିଭଳି ଭାବି ସେ କିଛି ଦୂର ଯାଇଛନ୍ତି କି କାହିଁ ହଠାତ୍ ପାଖରେ ଆସି ରହିଗଲା ତାଙ୍କ ନିଜ କାର୍ । ସେ କାହାରିକୁ କିଛି ନ କହି ଗାଡ଼ି ଭିତରେ ବସି ଡ୍ରାଇଭରକୁ ଇଙ୍ଗିତ ଦେଲେ ଘର ଅଭିମୁଖେ ଚଳାଇବା ପାଇଁ ।

× × ×

ଯେଉଁଦିନ ଅମିତା ଦେବୀ ଅଧ୍ୟାପକଙ୍କୁ କହିଲେ ସେ କିଛିଦିନ ପାଇଁ ବାପଘରକୁ ଚାଲିଯିବେ, ଅଧ୍ୟାପକ ତାଙ୍କୁ ବାଧା ଦେଲେନି । ଏଥିପୂର୍ବରୁ ଦୁଇଜଣଙ୍କ ଭିତରେ ମନୋମାଳିନ୍ୟ ଏତେ ବଢ଼ିଯାଇଥାଏ ଯେ ଅଧ୍ୟାପକ ଅମିତା ଦେବୀଙ୍କୁ ବାଧା ଦେବାକୁ ମୋଟେ ଇଚ୍ଛା କରୁ ନ ଥାନ୍ତି । ଅମିତା ଦେବୀ ଆଶା କରିଥିଲେ ଯେ ସେ ବାପଘରକୁ ଯିବା କଥା କହିଲେ ଅଧ୍ୟାପକ ତାଙ୍କୁ ଛାଡ଼ିବେନି । କିନ୍ତୁ ଯେତେବେଳେ

ଦେଖିଲେ, ଅଧ୍ୟାପକ ତାଙ୍କୁ ଅଟକାଇବାକୁ ମୋଟେ ଇଚ୍ଛୁକ ନୁହନ୍ତି, ସେତେବେଳେ ସେ ଦୁଃଖରେ ମ୍ରିୟମାଣ ହୋଇପଡ଼ିଲେ । ଯେଉଁ ସ୍ୱାମୀ ତାଙ୍କୁ ବିବାହ ଦିନଠାରୁ କେବେ ବାପଘରକୁ ପଠାଇ ଏକାକୀ ରହିବାକୁ ଭଲ ପାଇ ଆସି ନାହାନ୍ତି, ସେ ଆଜି ତାଙ୍କୁ ଏଭଳି ଭାବରେ ବିଦାୟ କରି ଏକାକୀ ରହିବାର ପ୍ରୟାସ ତାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ।

ପର ମୁହୂର୍ତ୍ତରେ ମନ ଭିତରେ ଆଉ ଏକ ପ୍ରଶ୍ନ ମୁଣ୍ଡ ଟେକି-ଉଠିଲା । ତେବେ ସେ କ'ଣ ମିସ୍ ସେନ୍‌ଙ୍କ ପ୍ରତି ଆକୃଷ୍ଟ ? ତା' ଯଦି ହୋଇଥାଏ, ମିସ୍ ସେନ୍ କଲେଜରେ ତାଙ୍କର ଯେତେବେଳେ ସହପାଠିନୀ ଥିଲେ, ସେତେବେଳେ ସେ ତ ଚାହିଁଥିଲେ ମିସ୍ ସେନ୍‌ଙ୍କୁ ବିବାହ କରିପାରିଥାନ୍ତେ । ତା ନ କରି ଏ ବୟସରେ ଉଭୟେ ଉଭୟଙ୍କ ପ୍ରତି ଏଭଳି ହୀନ ଭାବରେ ଆକୃଷ୍ଟ କାହିଁକି ? ହୋଇପାରେ, ଆଜି ଅଧ୍ୟାପକଙ୍କର ଅପୂର୍ବ ଖ୍ୟାତି, ଅକଳନୀୟ ସମ୍ମାନ ମିସ୍ ସେନ୍‌ଙ୍କୁ ଅଧ୍ୟାପକଙ୍କର ପ୍ରତି ଆକୃଷ୍ଟ କରିପାରିଥାଏ ନତୁବା ମିସ୍ ସେନ୍‌ଙ୍କର ଦୁର୍ଦ୍ଦମନୀୟ ଯୌନ ଉପଭୋଗ କରିବାର ହୀନ ଲାଳସାର ନିର୍ଘାତ ଶିକାର ହୋଇପାରିଥାନ୍ତି ଅଧ୍ୟାପକ ।

ଦିନକୁ ଦିନ ଅଧ୍ୟାପକଙ୍କର କଥାବାର୍ତ୍ତା, ଆଚରଣ ବ୍ୟବହାର ଓ ଯିବା ଆସିବା ଏତେ ରହସ୍ୟଜନକ ହୋଇପଡ଼ିଲା ଯେ ଅମିତା ଦେବୀ କିଛି ଦିନ ପାଇଁ ପୁଅକୁ ନେଇ ବାପ ଘରକୁ ଚାଲିଯିବାକୁ ମନସ୍ଥ କଲେ । ଯିବା ପୂର୍ବରୁ ମନର ସମସ୍ତ ବେଦନାକୁ ଜଣାଇ ଦେଇଗଲେ ଏକମାତ୍ର ଅନ୍ତରଙ୍ଗ ବନ୍ଧୁ ମିସେସ୍ ଦାସଗୁପ୍ତଙ୍କୁ । ସେ ଯେପରି ତାଙ୍କ ଅନୁପସ୍ଥିତିରେ ଅଧ୍ୟାପକଙ୍କ ଉପରେ ଦୃଷ୍ଟି ରଖିଥାନ୍ତି ଓ ତାଙ୍କର ଭଲମନ୍ଦ ଖବର ତାଙ୍କୁ ଜଣାଉଥାନ୍ତି, ସେଥିପ୍ରତି ଅନୁରୋଧ କରିଗଲେ ଗଲାବେଳେ ।

ଯେଉଁଦିନ ଅମିତା ଦେବୀ ବାପଘରକୁ ଯିବା ପାଇଁ ପାଟଣା ଯିବା କଥା, ସେ ଦିନ ଅଧ୍ୟାପକ ତାଙ୍କୁ ଷ୍ଟେସନ ପର୍ଯ୍ୟନ୍ତ ବାଟୋଇ ଦେବାକୁ ଯିବେ କଅଣ, ଏକ ମିଟିଂର ଛଳନା କରି ଅମିତା ଦେବୀ ଷ୍ଟେସନ ଯିବା ପୂର୍ବରୁ ଘରୁ ବାହାରିଗଲେ ।

ବଡ଼ ମନଦୁଃଖ ଓ ବିଷଣ୍ଣ ବଦନରେ ଅମିତା ଦେବୀ ସେଦିନ କଲିକତା ଛାଡ଼ିଲେ ପାଟଣା ଅଭିମୁଖେ ।

× × ×

ଇତିମଧ୍ୟରେ କିଛିଦିନ ବିତିଗଲା । ଅଧ୍ୟାପକ ମିସ୍ ସେନଙ୍କ ସହିତ ଯୁନେଲା ସ୍ୱପ୍ନରେ ବିଭୋର । ଅଧ୍ୟାପକଙ୍କର ମଧ୍ୟ ଯଥେଷ୍ଟ ପରି-ବର୍ତ୍ତନ ଆସିଗଲାଣି ଇତିମଧ୍ୟରେ । ଯେ ଦିନେ ଆଦର୍ଶର ଦୋହି ଦେଇ କ୍ଲବଠାରୁ ଦୂରରେ ରହୁଥିଲେ, ସେ ଆଜି ମିସ୍ ସେନଙ୍କ ସଙ୍ଗେ କ୍ଲବକୁ ନ ଗଲେ ଚଳୁନି । କଲେଜର ଅଧ୍ୟାପନାକୁ ଯେ ଜୀବନର ଶ୍ରେଷ୍ଠ ବ୍ରତ ବୋଲି ଧରି ନେଇଥିଲେ, ସେ ନାନାଦି କାମ ଛଳନାରେ ସହକାରୀ ଅଧ୍ୟାପକଙ୍କୁ ସେ ଦାୟିତ୍ୱ ଦେଇ କଲେଜରୁ ଅନୁପସ୍ଥିତ ରହୁଛନ୍ତି । ଅଧ୍ୟାପକଙ୍କର ଏଭଳି ପରିବର୍ତ୍ତନରେ ଗୁଜବ, ଅଧ୍ୟାପକ ଓ ବନ୍ଧୁମାନଙ୍କ ଭିତରେ ଏତେ ବିସ୍ମୟର ଗୁପ୍ପ ଖେଳି ଯାଇଥାଏ ·ଯେ ଏଭଳି କର୍ମନିଷ୍ଠ ବୈଜ୍ଞାନିକଙ୍କର ଏ କ'ଣ ହେଲା ଭାବି କେହି କିଛି ଠିକ୍ କରିପାରୁ ନ ଥାନ୍ତି ।

ରାତି ପ୍ରାୟ ଦଶଟା ହେବ । ଅଧ୍ୟାପକ ସେ ଦିନ ସନ୍ଧ୍ୟା ବେଳେ ବାଲିଗଞ୍ଜର ଇଣ୍ଡିଆନ କ୍ଲବକୁ ଯାଇପାରି ନ ଥାନ୍ତି । ଲାଟ୍ ସାହେବଙ୍କର ଏକ ସାନ୍ଧ୍ୟ ନିମନ୍ତ୍ରଣ ରକ୍ଷାକରି ସେ ଅଟକି ଯାଇଥାନ୍ତି ଲାଟ ଭବନଠାରେ । ସାନ୍ଧ୍ୟ ଭୋଜନ ଶେଷ କରି ସେ ଘରକୁ ନ ଯାଇ ଛୁଟି ଆସିଥାନ୍ତି କ୍ଲବକୁ, ମିସ୍ ସେନ୍‌କୁ ସଙ୍ଗରେ ନେଇ ଘରକୁ ଯିବା ପାଇଁ । ଅଧ୍ୟାପକ କ୍ଲବ୍‌ର ନାଚ ରୁମ୍‌କୁ ପଶିଗଲାବେଳକୁ ନାଚ ଭାଙ୍ଗିଗଲାଣି । କେତେ ଜଣ ସାହେବୀ ପୋଷାକପିନ୍ଧା ବାବୁ ମଦନିଶାରେ ଟଳମଳ ହେଉଥାନ୍ତି । ସେମାନଙ୍କ ଭିତରୁ ଦୁଇ ତିନି ଜଣ ଚଳେ ପଡ଼ି ନାନା ଅଶ୍ଳୀଳ ଭାଷାରେ ମନକୁମନ କଥାବାର୍ତ୍ତା ହେଉଥାନ୍ତି ।

ଅଧ୍ୟାପକ ମିସ୍ ସେନ୍‌କୁ ଖୋଜି ନ ପାଇ କ୍ଲବ୍‌ରୁ ବାହାରି ଆସୁଥାନ୍ତି, ହଠାତ୍ ଦେଖିଲେ ଗୋଟିଏ ଅର୍ଦ୍ଧ ଆଲୋକିତ କୋଠରୀରେ ଜଣେ ସାହେବୀ ପୋଷାକପିନ୍ଧା ବାବୁ ଏକ ଇଜି ଚେୟାରରେ ଅର୍ଦ୍ଧଶାୟିତ ଅବସ୍ଥାରେ ପଡ଼ିଛନ୍ତି । ତାଙ୍କ କୋଳରେ ଆବଦ୍ଧ ଏକ ଭଦ୍ରମହିଳା ଅର୍ଦ୍ଧ-ଉଲଗ୍ନ ଅବସ୍ଥାରେ ! ଉଭୟେ ମଦନିଶାରେ ବିଭୋର । ମଦ୍ୟ-ପାନରତା ଭଦ୍ରମହିଳା ନବ ଯୁବକଙ୍କ ଆତିଥ୍ୟରେ ନବୀନ ପ୍ରିୟାର ବାହୁବନ୍ଧନରେ ନିଜକୁ ହଜାଇଦେଇ କୁଟିଳ ପ୍ରୀତିର ଅବଦାନ ସ୍ୱରୂପ ହାସ୍ୟର କଳରୋଳ ଛୁଟାଉଥିଲେ । ସେହି ଅର୍ଦ୍ଧ ଆଲୋକିତ କୋଠରୀ ଭିତରେ ଭଦ୍ରମହିଳାଙ୍କ ପୋଷାକ ପରିଛଦ ବଡ଼ କୁରୁଚିପୂର୍ଣ୍ଣ । ମୁଣ୍ଡିତ ମୁଣ୍ଡରେ

କେଉଁଠି ଲୁଗା ବାନ୍ଧି । ବସନ୍ତ ବସ୍ତ୍ରାବରଣ ତନୁଟିର କ୍ଷୁଦ୍ରାତିକ୍ଷୁଦ୍ର ଅଂଶକୁ ମଧ୍ୟ ଆବୃତ କରିବାକୁ ଅକ୍ଷମ । ଘନ ଅଞ୍ଜନ କୁନ୍ତଳ କବରୀବନ୍ଧନମୁକ୍ତ ହୋଇଥିବାରୁ ଆଲୁଳାୟିତ, ପାଦ ପର୍ଯ୍ୟନ୍ତ ଲମ୍ବିଆସି ରକ୍ତରଞ୍ଜିତ ଚରଣ-ପ୍ରାନ୍ତକୁ ଚୁମ୍ବନ କରୁଛି । ଜର୍ଜେଟ ଶାଢ଼ୀର କ୍ଷୀଣ ମେଖଳା କମ୍ରବକ୍ଷ ଉପରୁ ଖସିଆସି ତଟାଣରେ ଲୋଟୁଛି ଠିକ୍ ପ୍ରଭାତର ମ୍ଳାନମୁଖୀ ରଜନୀ-ଗନ୍ଧା ବା ହେମନ୍ତ ନଶାନ୍ତର ବୃନ୍ତଚ୍ୟୁତ ଶିଶିରମିଶ୍ରିତ ଦୁର୍ବାଦଳବଲୁଣ୍ଠିତ ଶାଖାଭ୍ରଷ୍ଟ- ଶେଫାଳିକା ଭଳି । ପୀନୋନ୍ନତ ବକ୍ଷକୁ ଅର୍ଦ୍ଧ ଉନ୍ମୁକ୍ତ କରି ବକ୍ଷଦୃପ ଫିଟିଆସି ଭଦ୍ରଲୋକଙ୍କ ପୃଥୁଳ କଟିକୁ ଚୁମ୍ବନ କରୁଛି ।

ଭଦ୍ରମହିଳାଙ୍କୁ ନିଜ କୋଳରେ ଜୋରରେ ଚାପିଧରି ବସା ବସା ଗଳାରେ ଭଦ୍ରଲୋକ କହୁଥାନ୍ତି, "ପ୍ରିୟେ, ତୁମେ ବାସ୍ତବିକ କେତେ ସୁନ୍ଦର କହିଲ ? ସତେ ଯେପରି ପାରସ୍ୟର ଗୋଲାପ ଫୁଲ କି ନନ୍ଦନ କାନନର ଶୁଭ୍ର ପାରିଜାତ ! ତୁମର ଏ ପଦ୍ମପଲାଶ ନୟନ, ଜଳଦକୃଷ୍ଣ କୁଞ୍ଚିତ କେଶରାଶି, ସୁରୁସ୍ନିଗ୍ଧ କଳେବର, ସର୍ବୋପରି ତୁମର ଏହି ଉଚ୍ଛ୍ୱସିତ ଯୌବନର ଶତ ସଂକେତପୂର୍ଣ୍ଣ ଲୋଭନୀୟ ଉନ୍ନତ ବକ୍ଷ ସମ୍ମୁଖରେ ମୁଁ ନିଜକୁ ଆହୁତି ଦେବାକୁ ତିଳେମାତ୍ର କୁଣ୍ଠାବୋଧ କରିବିନି ସୁନ୍ଦରୀ ! ଆଜି ମୁଁ ତୁମକୁ କୋଳରେ ପାଇ ଅନୁଭବ କରୁଛି ସତେ ଯେପରି ସ୍ୱର୍ଗର ମେନକା କି ଉର୍ବଶୀ ମୋ କୋଳରେ ଚିର-ଆଶ୍ରିତା ।"

ଏତିକି କହି ଭଦ୍ରମହିଳାଙ୍କୁ ଏକ ଗାଢ଼ ଚୁମ୍ବନ ଦେଇ ତାଙ୍କର ଅରୁଣାଭ କପୋଳକୁ ଆରକ୍ତ କରି ପକାଇଲେ ।

"ଆଃ, ତୁମକୁ ଚୁମ୍ବନ ଦେବା କେତେ ମଧୁର ପ୍ରିୟେ ! ସ୍ୱର୍ଗର ଅପ୍‌ସରାକୁ ଚୁମ୍ବନ ଦେଲେ ବି ତାହା ଏତେ ମଧୁର କି ଆନନ୍ଦଦାୟକ ହେବନି ।

ଭଦ୍ରଲୋକଙ୍କ ସହିତ ଭଦ୍ରମହିଳାଙ୍କର ଏଭଳି କୁରୁଚିପୂର୍ଣ୍ଣ ମୁକ୍ତ ଯୌନାଭିନୟ ଦେଖି ଅଧ୍ୟାପକଙ୍କର ତାଳୁଠାରୁ ତଳିପା ପର୍ଯ୍ୟନ୍ତ ଜଳିଗଲା । ସେ ତରତର ହୋଇ ଫେରିପଡ଼ି ସେହି ଘନ ଅନ୍ଧାରରେ କେଉଁଆଡେ ମିଳାଇଗଲେ ।

କ୍ଲବ୍ ରୁମ୍‌ରେ ଜଣେକ ଭଦ୍ରମହିଳା ସେଭଳି ଅବସ୍ଥାରେ ଦେଖିବା ଦିନଠାରୁ ଅଧ୍ୟାପକଙ୍କର ଚୈତନ୍ୟୋଦୟ ହେଲା । ଭାରତୀୟ କ୍ଲବ୍‌ମାନଙ୍କରେ ଆଧୁନିକତା ନାଁରେ ଏହି ଯେଉଁସବୁ ବର୍ବରତା ଓ ବ୍ୟଭିଚାର ହୁଏ ତାହା କେତେ ଜଘନ୍ୟ, ବୁଝିବାକୁ ବେଶି ସମୟ ଲାଗିଲାନି ତାଙ୍କୁ । ଭଲ ପାଇବାର ଛଳନା କରି କେତେ ଯୁବତୀଙ୍କୁ ଉପଭୋଗ କରିବାର ଅପଚେଷ୍ଟାରେ ସେମାନଙ୍କୁ କେତେ ତଳକୁ ଟାଣିଆଣନ୍ତି ଭାବିଲାବେଳକୁ ତାଙ୍କ ଦେହ ଶିହରି ଉଠିଲା । ପ୍ରଗତିଶୀଳ ଓ ଆଧୁନିକତାର ଦୋହାଇ ଦେଇ ଯେଉଁମାନେ ଅବିବାହିତା ରହନ୍ତି, ସେମାନଙ୍କ ମଧ୍ୟରୁ କେତେକେ କ୍ଲବ୍—ଜୀବନର ଦୋହାଇ ଦେଇ ଏହିଭଳି ହୀନ ଉପାୟରେ ସହସ୍ର ଶଯ୍ୟାର ନାୟିକା ହେବାକୁ ପସନ୍ଦ କରନ୍ତି, ଏହା ଦେଖି ତାଙ୍କ ମନ ସେଭଳି ଅବିବାହିତା ଯୁବତୀମାନଙ୍କ ବିରୁଦ୍ଧରେ ବିଦ୍ରୋହୀ ହୋଇଉଠିଲା । ମିସ୍ ସେନ୍ ଭଲ ପାଇବାର ଭିତରେ ଦେଇ ତାଙ୍କୁ ଯେ ଏଭଳି ସ୍ଥାନ ସ୍ଥାନକୁ ନେଇଆସିବେ, ସେ କେବେ ଆଶା କରି ନ ଥିଲେ ।

ମିସ୍ ସେନ୍ ପ୍ରଜ୍ୱଳ ହୋଇ ଯେତେବେଳେ ତାଙ୍କ ହୃଦୟାକାଶରେ ଫାଲ୍‌ଗୁନର ଅରୁଣିମାମୟୀ ଉଷା ପରି ଉଇଁଥିଲେ, ସେତେବେଳେ ସେ ଭାବି ନ ଥିଲେ ଯେ ସେ ତାଙ୍କର ସେହି ଛବିଳ ସୁନ୍ଦର ମୂର୍ତ୍ତିରେ ତୀବ୍ର ଛଳନାର ହଳାହଳ ନେଇ ଠିଆହେବେ ଏପରି ଭାବରେ । ଯାହାଙ୍କ ନାରୀତ୍ୱ ପାଖରେ ସେ ଶ୍ରଦ୍ଧା ଅଜାଡ଼ିଥିଲେ, ସେ ତାର ପ୍ରତିଦାନ ସ୍ୱରୂପ ଶତ ତରୁଣର ଆଶାପ୍ରୀ ବିହଗୀ ଭଳି ପକ୍ଷ ରଙ୍ଗାଇ ଇନ୍ଦ୍ରଧନୁ ପରି ରଙ୍ଗ ଧରି ଏଭଳି ଭାବରେ ପତାରଣା କରି ତାଙ୍କୁ ପଶୁତ୍ୱ ଆଡ଼କୁ ନେଇଯିବେ, ସେ ଆଶା ତାଙ୍କର ନ ଥିଲା ।

ପରମୁହୂର୍ତ୍ତରେ ପୁଣି ମନ ଫେରିଆସିଲା ଅମିତା ଦେବୀଙ୍କଠାକୁ । ତାଙ୍କର ବିରସ ମୁଖ ଓ ଲୋତକପୂର୍ଣ୍ଣ ଚକ୍ଷୁ ତାଙ୍କ ଅକ୍ଷିପଟ ଉପରେ ଭାସିଉଠିଲା । ସତୀ ସାଧ୍ୱୀ ଘରର ଲକ୍ଷ୍ମୀକୁ ସେ କପରି ଅବହେଳା କରି ଏଭଳି ଆଧୁନିକାଙ୍କୁ ପସନ୍ଦ କରିଥିଲେ, ସେ ଭାବିପାରିଲେନି । ବିଗତ ଦିନର ଘଟଣାଗୁଡ଼ିକ ଗୋଟିକ ପରେ ଗୋଟିଏ ତାଙ୍କର ମନେ ପଡ଼ିଗଲା । ଅଯଥା ବିନା କାରଣରେ ସେ ନହାତି ଛୋଟ ଛୋଟ କଥାରେ ଅମିତା ଦେବୀଙ୍କ ଉପରେ କପରି ଚିଡ଼ୁଥିଲେ, ତାଙ୍କୁ କେତେ କଟୁ କଥା କହୁଥିଲେ, ଭାବିଲା-

ବେଳକୁ ତାଙ୍କ ଆଖି ଛଳଛଳ ହୋଇ ଆସିଲା । ଏତେବଡ଼ ସ୍ୱାମୀଭକ୍ତ ସ୍ତ୍ରୀଙ୍କୁ ଅବହେଳା କରି ଏଭଳି ସ୍ୱାମୀମାନଙ୍କ ସହିତ ସମ୍ପର୍କରଖି ସେ କି ଅନ୍ୟାୟ କରିଛନ୍ତି, ହୃଦୟଙ୍ଗମ କଲାବେଳକୁ ତାଙ୍କୁ ବେଶି ଡେରି ଲାଗିଲାନି । ଅମିତା ଦେବୀ ଯଦି ଜାଣିପାରିଥାନ୍ତି ଅଧ୍ୟାପକଙ୍କର ଦୁର୍ବଳତା, ତେବେ ସେ ଅଧ୍ୟାପକଙ୍କୁ କ'ଣ ଭାବୁଥିବେ ସତେ ! ସେ ତାଙ୍କୁ କି ଘୃଣାଦୃଷ୍ଟିରେ ଦେଖୁ ନ ଥିବେ, ଭାବିଲାବେଳକୁ ତାଙ୍କ ମୁଣ୍ଡ ଘୁରାଇଗଲା ।

× × × × ×

"ଚନ୍ଦ୍ରମଣ୍ଡଳରେ ବସତି ସ୍ଥାପନର ସମ୍ଭାବନା" ଉପରେ ଏକ ବକ୍ତୃତା ଦେବା ପାଇଁ ନିମନ୍ତ୍ରିତ ହୋଇ ଅଧ୍ୟାପକ ପଟ୍ଟନାୟକ ଯାଇଥାନ୍ତି ଦିଲ୍ଲୀ ବିଶ୍ୱବିଦ୍ୟାଳୟକୁ । ଫେରିଲାବେଳେ ପାଟଣାରେ ଓହ୍ଲାଇ ଶ୍ୱଶୁର ଘରକୁ ଯିବେ ବୋଲି ଠିକ୍ କରିଥାନ୍ତି । ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ତାଙ୍କୁ ଖୁବ୍ ମହା-ସମାରୋହରେ ସମ୍ବର୍ଦ୍ଧନା କରାଯାଉଥାଏ ଭାରତର ଏକ ଶ୍ରେଷ୍ଠ ବୈଜ୍ଞାନିକ ଭାବରେ । ସେ ଯେଉଁ ସଭାରେ ଭାଷଣ ଦେବେ, ସେହି ସଭାରେ ସଭାପତିତ୍ୱ କରୁଥାନ୍ତି ବିଶ୍ୱବିଦ୍ୟାଳୟର କୁଳପତି । ଅଧ୍ୟାପକ ପଟ୍ଟନାୟକଙ୍କୁ ସ୍ୱାଗତ ଜଣାଇ ଅଭିନନ୍ଦନପତ୍ର ପାଠ କଲା ପରେ କୁଳପତି ଉଠି ଅଧ୍ୟାପକଙ୍କୁ ଅନୁରୋଧ କଲେ ଭାଷଣ ଦେବାପାଇଁ । ଅଧ୍ୟାପକ ତାଙ୍କ ଓଜସ୍ୱିନୀ ଭାଷାରେ ଆରମ୍ଭ କଲେ "ଚନ୍ଦ୍ରମଣ୍ଡଳରେ ବସତି ସ୍ଥାପନ ସମ୍ଭାବନା" ଉପରେ ବୈଜ୍ଞାନିକ ଆଲୋଚନା ।

ମାନନୀୟ କୁଳପତି ମହୋଦୟ ଓ ଉପସ୍ଥିତ ବନ୍ଧୁଗଣ,

ଆଧୁନିକ ବିଜ୍ଞାନର ସବୁଠାରୁ ଆକର୍ଷଣୀୟ ବିଷୟ "ଚନ୍ଦ୍ରମଣ୍ଡଳରେ ବସତି ସ୍ଥାପନ ସମ୍ଭାବନା" ଉପରେ ଏକ ଭାଷଣ ଦେବାପାଇଁ ମୋତେ ଅନୁରୋଧ କରାଯାଇଥିବାରୁ ମୁଁ ପ୍ରଥମତଃ ମୋ କୃତଜ୍ଞତା ଦିଲ୍ଲୀ ବିଶ୍ୱ-ବିଦ୍ୟାଳୟର କର୍ମକର୍ତ୍ତାମାନଙ୍କଠାରେ ଜ୍ଞାପନ କରୁଛି । ଆଧୁନିକ ବିଜ୍ଞାନ ବର୍ତ୍ତମାନ ଯେଉଁ ଅବସ୍ଥାରେ ଆସି ପହଞ୍ଚିଛି, ସେଥିରେ ଯେତେ ବଡ଼ ଅସମ୍ଭବ କଥାଟାଏ ହେଲେ ମଧ୍ୟ ତାହା ସମ୍ଭବ ହୋଇପାରିବ ବୋଲି ଧାରଣା କରିବା ଅସମୀଚୀନ ନୁହେଁ । ସେହିଭଳି ଏ ଅଜବ ଅସମ୍ଭବ କଥା ଭିତରୁ 'ଚନ୍ଦ୍ରମଣ୍ଡଳରେ ବସତି ସ୍ଥାପନ' କଥାଟା ଗୋଟିଏ । ଯେଉଁ ଚନ୍ଦ୍ରଲୋକକୁ ଆମେ ଆମ ପିତୃଲୋକ ବୋଲି କହି ପୂଜା କରୁଁ, ମଣିଷ ଯାଇ ସେଠି ବସତି

ସ୍ଥାପନ କରିବା କମ୍ ବଡ଼ ଆଶ୍ଚର୍ଯ୍ୟର କଥା ନୁହେଁ । ବୈଜ୍ଞାନିକମାନଙ୍କର ବର୍ତ୍ତମାନ ଯେଉଁ ଯୋଜନା ଅଛି, ସେଥିରୁ ସ୍ପଷ୍ଟ ଜଣାପଡ଼ୁଛି ଯେ ଚଳିତ ଶତାବ୍ଦୀ ଶେଷ ହେବା ପୂର୍ବରୁ ଚନ୍ଦ୍ରମଣ୍ଡଳରେ ମଣିଷ ବାସ କରୁଥିବା ଏକ ସହର ପ୍ରତିଷ୍ଠା କରାଯାଇ ସାରିଥିବ ।

ଏହି ସହର ପ୍ରତିଷ୍ଠା ଫଳରେ ଚନ୍ଦ୍ରପୃଷ୍ଠର ଅବସ୍ଥା ସମ୍ବନ୍ଧରେ ବହୁ ଠିକନଖି ତଥ୍ୟ ସଂଗ୍ରହ କରାଯିବ । ଚନ୍ଦ୍ର ପୃଷ୍ଠର ଭୂତାତ୍ତ୍ୱିକ ପରୀକ୍ଷା କରାଯାଇ ଏହାର ଭୌଗଳିକ ମାନଚିତ୍ର ମଧ୍ୟ ତିଆରି କରାଯିବ । ଚନ୍ଦ୍ରପୃଷ୍ଠରେ କେଉଁଠି ଶୁଷ୍କ ସମୁଦ୍ର ଅଛି, ସେ ସମୁଦ୍ରର ଗଭୀରତା କେତେ, ସେଥିରେ ଧୂଳି ଅଛି କି ଆଉ କଣ ଭରି ରହିଛି ସେ ସବୁ ପରୀକ୍ଷା କରାଯାଇ ସେହି ଅନୁସାରେ ଏକ ମାନଚିତ୍ର ପ୍ରସ୍ତୁତ କରାଯିବ । ପୃଥିବୀର ଯେମିତି ମାନଚିତ୍ର ତିଆରି କରାଯାଇଛି ଚନ୍ଦ୍ର ପୃଷ୍ଠର ସେମିତି ଏକ ମାନଚିତ୍ର ତିଆରି କରାଯିବ । ଭବିଷ୍ୟତରେ ଯେଉଁ ସହର ଚନ୍ଦ୍ର ପୃଷ୍ଠରେ ସ୍ଥାପିତ ହେବ, ସେ ସହର ଚନ୍ଦ୍ର ପୃଷ୍ଠରେ ଜଳ ଅନ୍ୱେଷଣ ପାଇଁ ଅଧିକ ସମୟ ବ୍ୟୟ କରିବ । କାରଣ ଭବିଷ୍ୟତରେ ଚନ୍ଦ୍ର ପୃଷ୍ଠରେ ଯେଉଁ ବସତି ସ୍ଥାପନ କରିବାର ଯୋଜନା ରହିଛି, ସେଥିରେ ଜଳ ହେଉଛି ଏକ ଅତ୍ୟାବଶ୍ୟକ ପଦାର୍ଥ । ଚନ୍ଦ୍ରରେ କେଉଁ ଧରଣର ଜନବସତି ଗଢ଼ି ଉଠିବ, ତାହା ଅନେକାଂଶରେ ନିର୍ଭର କରୁଛି ଚନ୍ଦ୍ର ପୃଷ୍ଠରେ ଏହି ଜଳର ସମ୍ଭାବନା ଉପରେ ।

ଆମେରିକା ଓ ରୁଷିଆ ଉଭୟ ଦେଶ ଚନ୍ଦ୍ର ପୃଷ୍ଠରେ ବସତି ସ୍ଥାପନ କରିବା ପୂର୍ବରୁ ଚନ୍ଦ୍ର ପୃଷ୍ଠକୁ ଉପରୋକ୍ତ ରୀତିରେ ପରୀକ୍ଷା କରିବାକୁ ବାଧ୍ୟ ହେବେ । ଆମେରିକାନ୍‌ମାନଙ୍କ ଯୋଜନା ଅନୁସାରେ ଆସନ୍ତା ୧୯୮୦ ମସିହା ସୁଦ୍ଧା ସେମାନେ ଚନ୍ଦ୍ର ପୃଷ୍ଠରେ ଏକ ଅସ୍ଥାୟୀ କ୍ଷୁଦ୍ର ଷ୍ଟେସନ ସ୍ଥାପନ କରିସାରିଥିବେ । ସେମାନେ ଆହୁରି ଆଶା କରନ୍ତି ଯେ ୧୯୮୫ ମସିହା ସୁଦ୍ଧା ଚନ୍ଦ୍ରପୃଷ୍ଠର ଭୂତାତ୍ତ୍ୱିକ ସର୍ଭେ ଓ ଖଣିଜ ସର୍ଭେ ପୁରାପୁରି ଶେଷ ହୋଇ ଯାଇଥିବ, ଫଳରେ ୧୯୯୦ ମସିହା ସୁଦ୍ଧା ଚନ୍ଦ୍ର ପୃଷ୍ଠରେ ୩୦ ଜଣ ଲୋକ ରହିଲା ଭଳି ଏକ ସ୍ଥାୟୀ ବସତି ସ୍ଥାପିତ ହୋଇଥିବ । ଆମେରିକାନମାନଙ୍କ ଯୋଜନାନୁସାରେ ଏହି ଚଳିତ ଶତାବ୍ଦୀର ଶେଷ ଆଡ଼କୁ ଚନ୍ଦ୍ର ପୃଷ୍ଠରେ ୫୦୦ ଲୋକ ରହିଲା ଭଳି ଏକ କ୍ଷୁଦ୍ର ସହର ପ୍ରତିଷ୍ଠା କରିବା ଅସମ୍ଭବ ହେବ ନାହିଁ ।

ଆମେରିକାନମାନେ ଆହୁରି ଆଶା କରନ୍ତି, ଆସନ୍ତା ଅଳ୍ପ କେତେ ବର୍ଷ ଭିତରେ ସେମାନଙ୍କ ରକେଟ୍‌ର ଶକ୍ତି ଯଥେଷ୍ଟ ବୃଦ୍ଧି କରାଯାଇ ପାରିବ । ତା ଯଦି ହୁଏ ତେବେ ଧୀରେ ଧୀରେ ସେହି ସବୁ ସୁପର ରକେଟ ସାହାଯ୍ୟରେ ଚନ୍ଦ୍ରପୃଷ୍ଠକୁ ବସତି ସ୍ଥାପନ ପାଇଁ ଆବଶ୍ୟକ ଜିନିଷପତ୍ର ୧୯୯୫ ମସିହା ସୁଦ୍ଧା ପଠାଯାଇ ପାରିବ । ପାଞ୍ଚଶହ ଲୋକ ରହିଲା ଭଳି ଏକ ସହର ପାଇଁ ଯାହା ଯାହା ଦରକାର, ତାହା ସବୁ ପୃଥିବୀ ପୃଷ୍ଠରୁ ବୋହିନେବା ଅସମ୍ଭବ ହେବନାହିଁ । ଆସନ୍ତା ୨୦୦୦ ମସିହା ବେଳକୁ ପ୍ରାୟ ପାଞ୍ଚଶହ ଲୋକ ପୃଥିବୀରୁ ଯାଇ ଚନ୍ଦ୍ରପୃଷ୍ଠରେ ପହଞ୍ଚି ଆଗରୁ ପଠାଯାଇଥିବା ସାଜ ସରଞ୍ଜାମ ସାହାଯ୍ୟରେ ଘରଦ୍ୱାର ତିଆରି କରିବାରେ ଲାଗି ଯାଇଥିବେ । ସେମାନଙ୍କ ପ୍ରଚେଷ୍ଟାରେ ଅଳ୍ପ କେଇ ଦିନ ଭିତରେ ଚନ୍ଦ୍ରପୃଷ୍ଠରେ ଏକ ସୁନ୍ଦର ସହର ଗଢ଼ି ଉଠିବ । ଆମେରିକାନମାନେ ଯାହା ହିସାବ କରନ୍ତି, ତଦନୁସାରେ ଜଣେ ଲୋକକୁ ଚନ୍ଦ୍ରକୁ ପଠାଇ ତାକୁ ଚନ୍ଦ୍ରରେ ମାସଟିଏ ରଖିବା ପାଇଁ ସେତେବେଳକୁ ଖର୍ଚ୍ଚ ପଡ଼ିବ ପ୍ରାୟ ୪୫ କୋଟି ଟଙ୍କା । ସେହି ଅନୁସାରେ ହିସାବ କଲେ ୫୦୦ ଲୋକଙ୍କୁ ଚନ୍ଦ୍ରକୁ ପଠାଇ ସେଠାରେ ଗୋଟିଏ ସହର ପ୍ରତିଷ୍ଠା କରି ସେମାନଙ୍କୁ ଖାଇବାକୁ ପିଇବାକୁ ଦେଇ ରଖିବାପାଇଁ ମାସକୁ ଅନ୍ୟୂନ୍ୟ କୋଡ଼ିଏ ବା଼ଇଶ ହଜାର କୋଟି ଟଙ୍କା ଖରଚ କରିବାକୁ ପଡ଼ିବ । ତା'ଛଡ଼ା ଚନ୍ଦ୍ରପୃଷ୍ଠରେ ୫୦୦ ଲୋକ ରହିଲା ଭଳି ସହରଟିଏ ପ୍ରତିଷ୍ଠା କରିବାକୁ ସାଢ଼େ ସାତ ହଜାର କୋଟି ପର୍ଯ୍ୟନ୍ତ ଟଙ୍କା ଦରକାର ହେବ । ଆମେରିକା ଭଳି ଧନୀ ଦେଶର ସରକାରଙ୍କ ପକ୍ଷରେ ଏ ଖରଚ ବହନ କରିବା କିଛି ଅସମ୍ଭବ ନୁହେଁ ।

ଆମେରିକା ସାଙ୍ଗକୁ ରୁଷିଆ ଯଦି ଚନ୍ଦ୍ରର ଆଉ ଏକ ଅଂଶରେ ସହର ପ୍ରତିଷ୍ଠା କରେ, ତେବେ ଚନ୍ଦ୍ର ପୃଷ୍ଠରେ ଜନବସତି ଗଢ଼ି ଉଠିବା ଅସମ୍ଭବ ନୁହେଁ । ଆମେରିକାନ ତଥା ରୁଷୀୟମାନେ ଆଶା କରନ୍ତି ଯେ, ଏକବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ବୈଜ୍ଞାନିକ ଏତେ ଶକ୍ତିଶାଳୀ ରକେଟ ତିଆରି କରିବାର ବାଟ ବାହାରକରି ପାରିଥିବେ, ଯେଉଁଥିରେ ଚନ୍ଦ୍ର-ଲୋକକୁ ଗଲେ ଜଣପିଛା ଖରଚ ବେଶି ପଡ଼ିବ ନାହିଁ । ପରମାଣୁ ଶକ୍ତିଚାଳିତ ରକେଟ ବ୍ୟବହୃତ ହେଲେ ଚନ୍ଦ୍ରମଣ୍ଡଳ ଅଭିଯାନ ଖରଚ ଆଶାତୀତ ଭାବରେ କମି ଆସିବ ।

ପ୍ରଥମେ ପ୍ରଥମେ ଚନ୍ଦ୍ରରେ ଗୋଟିଏ ବେଳା ଖାଇବା ପାଇଁ ଖର୍ଚ୍ଚ ପଡ଼ିବ ହାରାହାରି ୨୫।୩୦ ଲକ୍ଷ ଟଙ୍କା । ଅନେକେ ଭାବୁଥିବେ ଯେ ଚନ୍ଦ୍ର ରେ ଯଦି ଗୋଟିଏ ବେଳା ଖାଦ୍ୟର ମୂଲ୍ୟ ୨୫।୩୦ ଲକ୍ଷ ଟଙ୍କା ପଡ଼େ, ତେବେ ଚନ୍ଦ୍ରଲୋକରେ ହୋଟେଲ, ରେଷ୍ଟୁରାଣ୍ଟ ଆଦି ଖୋଲିଲେ ଖୁବ୍ ଲାଭଜନକ ହେବ । କାରଣ ଯେଉଁ ମିଲ୍ ପୃଥିବୀରେ ମାତ୍ର ପାଞ୍ଚ ସାତ ଟଙ୍କା, ସେହି ମିଲ୍‌ର ଦାମ୍ ଚନ୍ଦ୍ରଲୋକରେ ହେଉଛି ୨୫।୩୦ ଲକ୍ଷ ଟଙ୍କା । ସେହିଭଳି ଯେଉଁ ଚା' କପେର ଦାମ୍ ପୃଥିବୀରେ ଚାରିଅଣା, ସେହି ଚା କପେ ଚନ୍ଦ୍ରରେ ପଡ଼ିବ ପ୍ରାୟ ଦୁଇ ଲକ୍ଷ ଟଙ୍କା । ସରବତ୍ ଗିଲାସେ ଯଦି ଏଠି ପଡ଼ୁଛି ଆଠଅଣା, ତେବେ ଚନ୍ଦ୍ରରେ ପଡ଼ିବ ଚାରି ପାଞ୍ଚ ଲକ୍ଷ ଟଙ୍କା । ଏହା ଉପରକୁ ବେଶ୍ ଲାଭଜନକ ଦିଶିଲେ ମଧ୍ୟ ସମସ୍ତଙ୍କର ମନେ ରଖିବା ଉଚିତ୍ ଯେ ଚନ୍ଦ୍ରକୁ ଖାଦ୍ୟ ପଦାର୍ଥ ନେଇ ସେଠାରେ ଖାଇବାକୁ ଦେଲାବେଳକୁ ପ୍ରତ୍ୟେକ ମିଲ ପିଚ୍ଛା ପ୍ରାୟ ସେତିକି ଖରଚ ପଡ଼ିଯାଇଥିବ । ତେଣୁ ଲାଭର ପରିମାଣ ଉପରକୁ ଯାହା ଦିଶୁଛି ତାହା ମୋଟେ ହେବ ନାହିଁ । ଜଣେ ଲୋକର ଖାଦ୍ୟ ଓ ପାନୀୟ ବୋଝ ନେଇ ଚନ୍ଦ୍ରରେ ପହଞ୍ଚାଇବା ପାଇଁ ପ୍ରାୟ ସେତିକି ଟଙ୍କା ଲାଗୁଥିବାରୁ ମିଲ୍‌ର ଦାମ୍ ଏହାଠାରୁ କମ ହେବା ସମ୍ଭବପର ନୁହେଁ । କିନ୍ତୁ ଦିନକୁ ଦିନ ଏହା ଢେର କମି ଆସିବ ବୋଲି ଆଶା । ଆସନ୍ତା ପଚାଶ ବର୍ଷ ଭିତରେ ଏମିତି ଦିନ ଆସିବ ଯେଉଁଦିନ ଚନ୍ଦ୍ରରେ ଗୋଟିଏ ଲଞ୍ଚ, ଡିନର କି ବ୍ରେକ୍‌ଫାଷ୍ଟର ମୂଲ୍ୟ ପୃଥିବୀର ଲଞ୍ଚ, ଡିନର କି ବ୍ରେକ୍‌ଫାଷ୍ଟର ମୂଲ୍ୟଠାରୁ ବିଶେଷ ବେଶି ପଡ଼ିବ ନାହିଁ । ବିଶେଷତଃ ଚନ୍ଦ୍ରରେ ଯଦି କୃଷିବାସ କରି ଖାଦ୍ୟ ଉତ୍ପାଦନ କରିବା ସମ୍ଭବପର ହୁଏ, ତେବେ ଚନ୍ଦ୍ରରେ ଗୋଟିଏ ମିଲ୍‌ର ମୂଲ୍ୟ ପୃଥିବୀର ମିଲ୍‌ଠାରୁ ବିଶେଷ ଅଧିକ ପଡ଼ିବ ନାହିଁ ବୋଲି ଆଶା ।

ଆମେରିକାନ୍‌ମାନେ ଯେଉଁଭଳି କଳ୍ପନା କରନ୍ତି ସେଥିରେ ଆସନ୍ତା ପଚାଶ ବର୍ଷ ଭିତରେ ଚନ୍ଦ୍ରରେ ଏମିତି ସାଧାରଣ ସହରଟିଏ ଗଢ଼ି ଉଠି ପାରିବ; ଯେଉଁଠି ସିନେମା, ଥିଏଟର, ନାଇଟ୍‌କ୍ଲବ, ହୋଟେଲ, ଜଳଖିଆ ଦୋକାନ ହାଟ ବଜାରଠାରୁ ଆରମ୍ଭ କରି ସହରର ଯାବତୀୟ ସୁଖସୁବିଧା ଯୋଗାଇ ଦିଆ ଯାଇଥିବ । ସେତେବେଳେ ପୃଥିବୀରୁ ଲୋକମାନେ ଚନ୍ଦ୍ରଲୋକ ଭ୍ରମଣରେ ଖାତିମତି ଯିବାଆସିବା କରୁଥିବେ । ଆଜିକାଲି ଲୋକେ ଯେମିତି ଗୋଟିଏ ଦେଶରୁ ଅନ୍ୟ ଦେଶକୁ ବୁଲିବାକୁ ଯାଉଛନ୍ତି, ଆସନ୍ତା ୫୦ ବର୍ଷ

ଭିତରେ ଲୋକେ ଚନ୍ଦ୍ରଲୋକକୁ ସେମିତି ବୁଲିବାକୁ ଯିବେ । ଆଜିକାଲି ଯେମିତି ବିଭିନ୍ନ କମ୍ପାନୀ ଉଡ଼ାଜାହାଜ ଚଳାଇ ଗୋଟିଏ ଦେଶର ଯାତ୍ରୀଙ୍କୁ ଅନ୍ୟ ଦେଶକୁ ବୋହିନେଇ ଯାଉଛନ୍ତି, ଆସନ୍ତା ୫୦ ବର୍ଷ ଭିତରେ ସେମିତି କେତେ କମ୍ପାନୀ ପୃଥିବୀରୁ ଯାତ୍ରୀମାନଙ୍କୁ ଚନ୍ଦ୍ରଲୋକକୁ ନେ ନେବା ଆଣିବା କରିବେ ତାର ଇୟତ୍ତା ନାହିଁ । ଚନ୍ଦ୍ର ସହିତ ଆସନ୍ତା କେତେ ବର୍ଷ ଭିତରେ ଆମର ସମ୍ପର୍କ ଏତେ ନିବିଡ଼ ହୋଇଯିବ ଯେ ଚନ୍ଦ୍ର ଓ ପୃଥିବୀ ପରସ୍ପରଠାରୁ ଅଲଗା ବୋଲି ଲୋକେ ଆଉ ଭାବିବେ ନାହିଁ । ଦୁଇଟିଯାକ ଯେମିତି ଗୋଟିଏ ସଂସ୍ଥା, ସେହିଭଳି ଲୋକେ ମନେ କରିବେ ।

ତେବେ ତୁମ୍ଭେମାନେ ପଚାରିପାର ଯେ ଚନ୍ଦ୍ରରେ ବାୟୁ ନାହିଁ, ଜଳ ନାହିଁ, ଜୀବଜଗତ ନାହିଁ ସେଠି କଣ କେବେ ଜନବସତି ଗଢ଼ିଉଠିବା ସମ୍ଭବ ହେବ ? ଯେଉଁଠି ବାୟୁ ନାହିଁ, ଜଳ ନାହିଁ କି ପ୍ରାଣୀ ଉଦ୍ଭିଦ ଆଦି କିଛି ନାହିଁ; ସେଠି ସେଭଳି ଅବସ୍ଥାରେ ଜନବସତି ଗଢ଼ି ଉଠିବ କେମିତି ? ଯେଉଁ ଉପଗ୍ରହ ମୃତ ପ୍ରାୟ, ଯେଉଁଠି ଜୀବନକୁ ଧରି ରଖିବାପାଇଁ ଆବଶ୍ୟକୀୟ ପଦାର୍ଥ ନାହିଁ, ସେଠି ମଣିଷ ବଞ୍ଚିରହିବା କ'ଣ କେବେ ସମ୍ଭବପର ?

ତେବେ ଏହାର ଉତ୍ତରରେ ମୁଁ କହିବି ଯେ, ବୈଜ୍ଞାନିକମାନଙ୍କ ଅଭିଧାନରେ ଅସମ୍ଭବ ବୋଲି ଶବ୍ଦଟାଏ ନାହିଁ । ମଣିଷ ଯାହା କଳ୍ପନା କରି-ପାରିବ, ବୈଜ୍ଞାନିକମାନେ ତାହାକୁ କାର୍ଯ୍ୟରେ ପରିଣତ କରିବାପାଇଁ ସମର୍ଥ । ଜଳ ଓ ବାୟୁଶୂନ୍ୟ ସ୍ଥାନରେ ଜନବସତି ସ୍ଥାପନ କରିବା କଷ୍ଟକର ହେଲେହେଁ ଅସମ୍ଭବ ନୁହେଁ । କେତେକଙ୍କ ମତରେ ଚନ୍ଦ୍ରର ଭୂମିତଳେ ଆଧୁନିକ ଧରଣର ଘରଦ୍ୱାର ପ୍ରତିଷ୍ଠା କରାଯାଇପାରେ ଓ ଏହି ଘରଗୁଡ଼ିକୁ ଏମିତିଭାବରେ ତିଆରି କରାଯିବ ଯେମିତିକି ଏହା ଭିତରେ ବାୟୁ ଛାଡ଼ିଲେ ବାୟୁ ଏ ଘର ଭିତରୁ ସହ-ଜରେ ବାହାରି ଯାଇପାରିବନି । ଏହି ଘରଗୁଡ଼ିକ ଭୂମିତଳେ କରାଯାଇଥିବାରୁ ଏହାର କାନ୍ଥ ବାୟୁରୋଧୀ ଧାତୁ ପାତରୁ ତିଆରି ହେବ । ବଡ଼ ବଡ଼ ଭୂମିତଳ ରେଲଲାଇନ୍‌ଗୁଡ଼ିକର ସୁଡ଼ଙ୍ଗ ଯେମିତି ଗୋଲାକାର ଭାବରେ ତିଆରି ହୋଇଥାଏ, ଏହି ଘରଗୁଡ଼ିକ ପ୍ରାୟ ସେମିତି ଗଠନରେ ତିଆରି ହେବ । ଏହି ଘରଗୁଡ଼ିକରେ ବିଭିନ୍ନ ପ୍ରକାର କ୍ୱାର୍ଟର, ରହିବାଘର, ଗାଧୁଆଘର, ପାଇଖାନା, ଖେଳଘର, ଗିର୍ଜା, ଦୋକାନ ବଜାର, ବିଜ୍ଞାନାଗାର, ପରୀକ୍ଷାଗାର, ପର୍ଯ୍ୟବେକ୍ଷଣାଗାର ଆଦି ସବୁକିଛି କରିହେବ । ଏହି ଘରେ ପୃଥିବୀପୃଷ୍ଠରେ

ବାୟୁର ଯେଉଁ ଗୃପ ଅଛି, ସେହି ଗୃପରେ ବାୟୁ ପୂରାଇ ଦିଆଯିବ । ତେଣୁ ସେଭଳି ଘରେ ପୃଥିବୀରେ ରହିଲା ଭଳି ଲୋକମାନେ ଖୋଲା ଦେହରେ ରହିପାରିବେ । ଘର ଭିତରେ ମହାଶୂନ୍ୟ ପୋଷାକ ପିନ୍ଧିବା ଦରକାର ପଡ଼ିବ ନାହିଁ । ଘରୁ ଯେତେବେଳେ ବାହାରକୁ ଯିବାକୁ ପଡ଼ିବ, ସେତେବେଳେ ମହାଶୂନ୍ୟ ପୋଷାକ ପିନ୍ଧିବାକୁ ହେବ । ଏହି ଘରେ ଲୋକମାନେ ରହିଲେ, ପୃଥିବୀରୁ ବାୟୁ ନେଇ ଘରଗୁଡ଼ିକରେ ପୂରାଇବାକୁ ପଡ଼ିବ । ପୃଥିବୀର ବାୟୁକୁ ତରଳ କିମ୍ବା କଠିନ କରି ଚନ୍ଦ୍ରମଣ୍ଡଳକୁ ବୋହିନେଇ ହେବ । ପାଞ୍ଚଶହ କି ହଜାରେ ଲୋକ ରହିଲା ଭଳି ଘରଗୁଡ଼ିକୁ ବାୟୁପୂର୍ଣ୍ଣ କରିବାକୁ ହେଲେ ଯେତିକି ବାୟୁ ଦରକାର ହେବ, ତାହା ପୃଥିବୀ ପୃଷ୍ଠରୁ ବୋହିନେବା ବିଶେଷ କିଛି କଷ୍ଟକର ହେବ ନାହିଁ ।

ଏହି ବାୟୁପୂର୍ଣ୍ଣ ଘରଗୁଡ଼ିକରେ ଥିବା ବାୟୁର ପ୍ରଧାନ ଅଂଶ ଅମ୍ଳଜାନକୁ ଲୋକମାନେ ପ୍ରଶ୍ୱାସରେ ନେଇ ଅଙ୍ଗାରକାମ୍ଳରେ ପରିଣତ କରିଦେବେ । ଏହି ଅଙ୍ଗାରକାମ୍ଳ ଗ୍ୟାସକୁ ମଣିଷ ପ୍ରଶ୍ୱାସରେ ଆଉ ନେଇ ପାରିବନି । କାରଣ ଏହା ବିଷାକ୍ତ । ତେଣୁ ଅଳ୍ପ କେଇ ଦିନ ଭିତରେ ଲୋକମାନେ ସେଇ ଘରେ ଅମ୍ଳଜାନ ଅଭାବରୁ ମରିଯିବା ସମ୍ଭାବନା । ଘରେ ଥିବା ବାୟୁର ଅମ୍ଳଜାନ ତକ ଶେଷ ହୋଇଗଲେ ଲୋକେ ଶ୍ୱାସରୁଦ୍ଧ ହେବାରୁ ବଞ୍ଚିପାରିବେନି ସତ କିନ୍ତୁ ଏହି ସମସ୍ୟାକୁ ସମାଧାନ କରିବା ବିଶେଷ କିଛି କଷ୍ଟକର ହେବନି । ଅଙ୍ଗାରକାମ୍ଳ ଗ୍ୟାସକୁ ବିଦ୍ୟୁତ ଶକ୍ତି ସାହାଯ୍ୟରେ ବିଘଟନ କରାଇ ଅମ୍ଳଜାନ ବାହାର କରିବା ବିଶେଷ କିଛି କଷ୍ଟକର ନୁହେଁ । ଏହି ଉପାୟ ଅବଲମ୍ବନ କରି ଚନ୍ଦ୍ର ପୃଷ୍ଠର ଘର ଭିତରର ବାୟୁରେ ଅମ୍ଳଜାନ ପରିମାଣ ସଦା ସର୍ବଦା ସମାନ ରଖିବା କଷ୍ଟକର ହେବ ନାହିଁ । ତେଣୁ ପୃଥିବୀ ପୃଷ୍ଠରୁ ଯେଉଁ ପରିମାଣର ବାୟୁ ନିଆଯାଇ ଥିବ, ସେତିକି ବାୟୁରେ ଚନ୍ଦ୍ର ପୃଷ୍ଠର ଲୋକମାନେ ବହୁତ ଦିନ ପର୍ଯ୍ୟନ୍ତ ଚଳିଯାଇ ପାରିବେ । ଅମ୍ଳଜାନର ପରିସମାପ୍ତି ସହଜରେ ଘଟିବ ନି ।

ଆଉ କେତେକ ବୈଜ୍ଞାନିକ ମତ ଦିଅନ୍ତି ଯେ, ଏହି କୋଠରୀରୁ ଯଦି କୌଣସି ଉପାୟରେ କିଛି ବାୟୁ ବାହାରି ଯାଏ, ତେବେ ଚନ୍ଦ୍ରପୃଷ୍ଠର ସିଲିକେଟ୍ ଜାତୀୟ ପ୍ରସ୍ତରରୁ ଏହି ଅମ୍ଳଜାନ ବାହାର କରି ବାହାରି ଯାଇ-

ଥିବା ଅମ୍ଳଜାନର ଅଭାବ ମେଣ୍ଟାଇ ହେବ । ଏହି ସିଲିକେଟ୍ ଜାତୀୟ ପ୍ରସ୍ତର ଚନ୍ଦ୍ର ପୃଷ୍ଠରେ ପ୍ରଚୁର ପରିମାଣରେ ରହିଛି । ତେଣୁ ଅମ୍ଳଜାନ ଗ୍ୟାସର ପରିମାଣ କୌଣସି କାରଣବଶତଃ ଯଦି କମିଯାଏ; ତେବେ ଏହି ଉପାୟରେ ଅଭାବ ପୂରଣ କରିବା କଷ୍ଟକର ହେବ ନାହିଁ ।

ଆଜି କେତେକଙ୍କ ମତରେ ଚନ୍ଦ୍ରରେ ଭୂମିତଳ ଘର ନ କରି ଚନ୍ଦ୍ର ପୃଷ୍ଠରେ ଯେଉଁସବୁ ଆଗ୍ନେୟଗିରିର ମୁଖ ଅଛି, ସେଠାରେ ଜନବସତି ପ୍ରତିଷ୍ଠା କରାଯାଇପାରିବ । ସେହିସବୁ ଆଗ୍ନେୟଗିରିର ମୁହଁ ଖୁବ୍ ବଡ଼ । ସେଗୁଡ଼ିକ ମୃତ ଆଗ୍ନେୟଗିରିର ମୁଖ ହୋଇଥିବାରୁ ସେଗୁଡ଼ିକର ଗଭୀରତା ବେଶୀ ନୁହେଁ । ସେହିଭଳି ପ୍ରଶସ୍ତ ଅଗଭୀର ଆଗ୍ନେୟଗିରିର ମୁଖ ଜନବସତି ପ୍ରତିଷ୍ଠା ପାଇଁ ଖୁବ ଉପଯୁକ୍ତ । ସେହି ଆଗ୍ନେୟଗିରିର ମୁଖ ଉପରେ ଏକ ପ୍ରକାଣ୍ଡ ସ୍ୱଚ୍ଛ ପ୍ଲାଷ୍ଟିକ ଘୋଡ଼ଣୀ ଘୋଡ଼ାଇ ଦେଇ ସେହି ସ୍ଥାନକୁ ଏକ ଆବଦ୍ଧ ସ୍ଥାନରେ ପରିଣତ କରିହେବ । ଏହି ଘୋଡ଼ଣୀଟି ଏପରି ଶକ୍ତ ହେବା ଆବଶ୍ୟକ ଯେପରିକି ଚନ୍ଦ୍ରପୃଷ୍ଠକୁ ଆସୁଥିବା ଅସଂଖ୍ୟ ଉଲ୍କାପିଣ୍ଡର ମାଡ଼କୁ ଏହା ସହ୍ୟ କରିବା ପାଇଁ ସମର୍ଥ ହୋଇଥିବ । ସେଥିପାଇଁ ଏହି ପ୍ଲାଷ୍ଟିକ ଘୋଡ଼ଣୀ ଭିତରେ ଶକ୍ତ ଇସ୍ପାତ ଛଡ଼ ଦିଆଯାଇ ଶକ୍ତିଶାଳୀ କରାଯାଇପାରିବ । ଏହି ଘୋଡ଼ଣୀଟି ଆଗ୍ନେୟଗିରିର ମୁଖ ଉପରେ ଏମିତି ଭାବରେ ବସାଯିବ ଯେମିତିକି ଏହା ପୁରାପୁରି ମୁଖଟିକୁ ଆବଦ୍ଧ କରିପାରିବ । ବର୍ତ୍ତମାନ ଏହି ଆବଦ୍ଧ ସ୍ଥାନ ଭିତରେ ବାୟୁ ଛାଡ଼ିଦେଲେ ଏହି ସ୍ଥାନଟି ପୃଥିବୀପୃଷ୍ଠ ଭଳି ବାୟୁପୂର୍ଣ୍ଣ ହେବ । ବର୍ତ୍ତମାନ ଏହି ସ୍ଥାନ ଭିତରେ ବିତଳ ତ୍ରିତଳ ପ୍ରାସାଦ ଆଦି ତିଆରି କରିଦେଲେ, ଏହି ପ୍ରାସାଦଗୁଡ଼ିକରେ ଲୋକେ ପୃଥିବୀପୃଷ୍ଠସ୍ଥ ପ୍ରାସାଦରେ ରହିଲାଭଳି ରହି ପାରିବେ ।

ଆଜିକାଲି ଆମେରିକା ପ୍ରଭୃତି ଦେଶରେ ଯେଉଁ ହାଲୁକା ପ୍ରି-ଫେବ୍ରିକେଟେଡ୍ ବା କାଗଜ ଘର ସବୁ ତିଆରି ହେଉଛି, ସେହି ସବୁ ଘରର ବିଭିନ୍ନ ଅଂଶ ପୃଥିବୀରୁ ବୋହିନେଇ ଏହି ସ୍ଥାନରେ ଖଞ୍ଜି ଅଳ୍ପ ସମୟ ଭିତରେ ବିତଳ ତ୍ରିତଳ ପ୍ରାସାଦ ସବୁ ତିଆରି କରିବା କଠିନ ନୁହେଁ । ଏହି ସ୍ୱଚ୍ଛ ଘୋଡ଼ଣୀ ତଳେ ଯେଉଁ ସବୁ ଘର ତିଆରି ହେବ, ସେଥିଭିତରେ ରହିବା କୋଠରି, ଗାଧୁଆଘର, ପାଇଖାନା, ହୋଟେଲ, ନାଚଘର, ଦୋକାନ

ବଜାର, ରେଷ୍ଟୁରାଣ୍ଟ, ଖେଳଘର, ଗିର୍ଜା ଆଦି ସବୁ କିଛି କରିହେବ । ଏହି ଘରେ ଯେଉଁମାନେ ରହିବେ ସେମାନେ ଚନ୍ଦ୍ରପୃଷ୍ଠର ସବୁକିଛି ସୌନ୍ଦର୍ଯ୍ୟ ଉପଭୋଗ କରିବା ସଙ୍ଗେ ସଙ୍ଗେ ଚନ୍ଦ୍ରପୃଷ୍ଠରେ ରହିବାର ଗୌରବ ଅର୍ଜନ କରି ପାରିବେ । ଏହି ସୁଢ଼ଙ୍ଗ ଘୋଡ଼ଣୀ ତଳେ ଏମିତି ଯନ୍ତ୍ର ବସିଥିବ, ଯେଉଁ ଯନ୍ତ୍ର ଘୋଡ଼ଣୀ ତଳେ ଥିବା ଜନବସତିରେ ସୃଷ୍ଟି ହେଉଥିବା ଅଙ୍ଗାରକାମ୍ଳ ଗ୍ୟାସକୁ ଅମ୍ଳଜାନରେ ପରିଣତ କରିପାରୁଥିବ । ଚନ୍ଦ୍ର ପୃଷ୍ଠରେ ଥିବା ଆଗ୍ନେୟଗିରି ମୁଖଗୁଡ଼ିକ ଏହିଭଳି ଭାବରେ ଜନବସତିରେ ପରିଣତ ହେଲେ ଏହା ଭୂମିତଳ ଜନବସତି ଅପେକ୍ଷା ଅଧିକ ଲୋକପ୍ରିୟ ହେବ ।

ତାପରେ ଏହି ଅଞ୍ଚଳଗୁଡ଼ିକୁ ଭୂମିତଳ ସୁଡ଼ଙ୍ଗ ସାହାଯ୍ୟରେ ପରସ୍ପର ସହ ଯୋଗ କରିଦେଲେ, ଗୋଟିଏ ଅଞ୍ଚଳ ସହିତ ଅନ୍ୟ ଅଞ୍ଚଳର ଲୋକମାନେ ସହଜରେ ଯୋଗାଯୋଗ ସ୍ଥାପନ କରିପାରିବେ । ଗୋଟିଏ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଯିବାକୁ ହେଲେ, ଏହି ଭୂମିତଳ ସୁଡ଼ଙ୍ଗ ବାଟେ ଗଲେ ଚନ୍ଦ୍ରପୃଷ୍ଠର ବାୟୁ ଶୂନ୍ୟତା ଦେଇ ଯିବାକୁ ପଡ଼ିବନି । ତେଣୁ ଗୋଟିଏ ଅଞ୍ଚଳରୁ ଆଉ ଏକ ଅଞ୍ଚଳକୁ ଯିବାପାଇଁ ହେଲେ ଥରକୁଥର ମହାଶୂନ୍ୟ ପୋଷାକ ପିନ୍ଧିବା ଦରକାର ପଡ଼ି ନ ପାରେ । ଏହି ସବୁ ସୁଡ଼ଙ୍ଗ ଭିତରେ ଟ୍ରାମ୍, ଟ୍ରେନ୍, ଟ୍ରଲି ବସ ଆଦି ଚଳାଚଳ କଲେ ସୁବିଧାରେ ଚନ୍ଦ୍ରପୃଷ୍ଠର ଅଧିବାସୀ ମାନେ ଗୋଟିଏ ଅଞ୍ଚଳରୁ ଆଉ ଏକ ଅଞ୍ଚଳକୁ ଯାଇ ଆସିପାରିବେ ।

ଚନ୍ଦ୍ରପୃଷ୍ଠରେ ଏହିଭଳି ଜନବସତି ଓ ସହରମାନଙ୍କରେ କଳ-କାରଖାନା ମଧ୍ୟ ପ୍ରତିଷ୍ଠା କରାଯାଇପାରେ । ସେହିସବୁ କଳକାରଖାନାକୁ ଯିବାକୁ ହେଲେ ଭୂମିତଳ ରାସ୍ତା ଦେଇ ଯାଇହେବ । ଚନ୍ଦ୍ରପୃଷ୍ଠ ଦେଇଯିବା ଯଦି ଦରକାର ପଡ଼େ, ତେବେ ବାୟୁଯୁକ୍ତ ଆବଦ୍ଧ ମୋଟର ଗାଡ଼ି ବ୍ୟବହାର କରିବାକୁ ପଡ଼ିବ । ତା'ହେଲେ ଚନ୍ଦ୍ର ଅଧିବାସୀମାନଙ୍କୁ ସଦାସର୍ବଦା ମହାଶୂନ୍ୟ ପୋଷାକ ପିନ୍ଧିବାରୁ ରିହାତି ମିଳିବ । ମହାଶୂନ୍ୟ ପୋଷାକଗୁଡ଼ିକ ପିନ୍ଧିବାକୁ ଏତେ ଅସୁବିଧା ଓ ସେଗୁଡ଼ିକ ଏତେ ଭାରି ଯେ ଏହାକୁ ସଦା ସର୍ବଦା ପିନ୍ଧି ଚଳାଚଳ ହେବାକୁ ଲୋକେ ଭଲ ପାଇବେନି । ତେଣୁ ଉପରୋକ୍ତ ବ୍ୟବସ୍ଥା ଗ୍ରହଣ ନ କଲେ ଚନ୍ଦ୍ରପୃଷ୍ଠରେ ଚଳାଚଳ ବଡ଼ କଷ୍ଟକର ହୋଇ-ପଡ଼ିବ ।

ଚନ୍ଦ୍ରପୃଷ୍ଠରେ ଦିନବେଳେ ଉତ୍ତାପ ୨୦୦ ଡିଗ୍ରୀ ଫାରେନ୍‌ହାଇଟ୍ ଓ ରାତିରେ ଉତ୍ତାପ ବରଫଠାରୁ ୨୦୦ ଡିଗ୍ରୀ ଫାରେନ୍‌ହାଇଟ୍ ତଳେ ଥିବାରୁ ଦିନବେଳେ ଅତ୍ୟଧିକ ଗରମ ଓ ରାତିବେଳେ ଅତ୍ୟଧିକ ଥଣ୍ଡା ହେବା ସ୍ୱାଭାବିକ । ତେଣୁ ଚନ୍ଦ୍ର ଅଧିବାସୀମାନଙ୍କର ଏହି ଅସୁବିଧାକୁ ଦୂର କରିବା ପାଇଁ ଚନ୍ଦ୍ରମଣ୍ଡଳରେ ଏହି ଘରଗୁଡ଼ିକ ବାୟୁ ଚାପ ନିୟନ୍ତ୍ରିତ ହେବା ଦରକାର ଫଳରେ ଚନ୍ଦ୍ରପୃଷ୍ଠରେ ଯେତେ ଗରମ କି ଥଣ୍ଡା ହେଲେ ମଧ୍ୟ ଚନ୍ଦ୍ର ଅଧିବାସୀମାନଙ୍କୁ ଏହା ବାଧିବ ନାହିଁ । ତେଣୁ ସେମାନଙ୍କର ଚଳାଚଳରେ କୌଣସି ଅସୁବିଧା ନ ହେବ ବୋଲି ଆଶା ।

ଚନ୍ଦ୍ରରେ ବାୟୁଚାପ ନିୟନ୍ତ୍ରଣ, ଆଲୋକ ବ୍ୟବସ୍ଥା ଓ ଅନ୍ୟାନ୍ୟ କାର୍ଯ୍ୟ ପାଇଁ ଯେଉଁ ବିରାଟ ପରିମାଣର ବିଦ୍ୟୁତ ଶକ୍ତି ଦରକାର ହେବ, ତାହା କେଉଁଠୁ ଆସିବବୋଲି ଅନେକେ ପଚାରିପାରନ୍ତି । ତେବେ ଏହା ଚନ୍ଦ୍ରପୃଷ୍ଠର ମୁକ୍ତ ସୂର୍ଯ୍ୟକିରଣରୁ ଯେ ଆହରଣ କରାଯାଇପାରିବ ଏଥିରେ ସନ୍ଦେହ ନାହିଁ । ସୂର୍ଯ୍ୟ କିରଣକୁ ପ୍ରତିଫଳନ କରି ବିଦ୍ୟୁତଶକ୍ତି ଉତ୍ପାଦନ କରିଯିବା ପାଇଁ ବଡ଼ ବଡ଼ ଦର୍ପଣ ଚନ୍ଦ୍ର ପୃଷ୍ଠରେ ବସାଯିବ । ଏହି ଦର୍ପଣ-ଗୁଡ଼ିକ ଚନ୍ଦ୍ରପୃଷ୍ଠରେ ବଡ଼ ବଡ଼ ଡୋମ୍ ଉପରେ ସ୍ଥାପିତ ହେବ । ଉଲ୍‌କାପିଣ୍ଡରୁ ଆସୁଥିବା ଧୂଳିକଣା ଦ୍ୱାରା ଏହି ଦର୍ପଣ ସବୁ ଯେପରି ଶୀଘ୍ର ଖରାପ ହୋଇ ନ ଯାଏ ସେଥିପ୍ରତି କଡ଼ା ବ୍ୟବସ୍ଥା ଗ୍ରହଣ କରାଯିବ । ଦର୍ପଣରୁ ଆସୁଥିବା ପ୍ରତିଫଳିତ କିରଣକୁ ବିଦ୍ୟୁତ ଶକ୍ତିରେ ପରିଣତ କରିବା ପାଇଁ ନାନାପ୍ରକାର ଯନ୍ତ୍ରପାତି ଚନ୍ଦ୍ରପୃଷ୍ଠରେ ସ୍ଥାପନ କରାଯିବ । ଏହି ଯନ୍ତ୍ରପାତି ସାହାଯ୍ୟରେ ଚନ୍ଦ୍ରପୃଷ୍ଠରେ ଯେଉଁ ବିଦ୍ୟୁତ ଶକ୍ତି ଉତ୍ପାଦିତ ହେବ ସେହି ବିଦ୍ୟୁତ ଶକ୍ତି ପୃଥିବୀ ତୁଳନାରେ ଚନ୍ଦ୍ରରେ ଢେର ଶସ୍ତା ହୋଇପାରିବ ।

'ଚନ୍ଦ୍ରମଣ୍ଡଳର ବାୟୁ ସମସ୍ୟା ସମାଧାନ ପରେ ପରେ ଜଳ ସମସ୍ୟା ସମାଧାନ ହେବା କ'ଣ ସମ୍ଭବ, ଆଲୋଚନା କରିବା ଉଚିତ୍ । କାରଣ ବାୟୁ ଭଳି ଜଳ ଆମର ଏକାନ୍ତ ଆବଶ୍ୟକ । ଜଳ ବିନା ଜୀବନ ଧାରଣ ସମ୍ଭବ ନୁହେଁ । ବୈଜ୍ଞାନିକମାନେ ଆଶା କରନ୍ତି ଯେ ଚନ୍ଦ୍ରର ଗଭୀର ଭୂମିତଳେ କିଛି ଜଳ ଥାଇପାରେ । ସାହାରା ପ୍ରଭୃତି ବଡ଼ ବଡ଼ ମରୁଭୂମିର ବୃଷ୍ଠଭାଗରେ ଜଳ ନ ଥାଏ । ତା' ବୋଲି

ସେ ମରୁଭୂମିରେ ଯେ କେଉଁଠି ଜଳ ନାହିଁ, ତା’ନୁହେଁ । ମରୁଭୂମିର ଗଭୀର ମାଟିତଳେ ଜଳଥିବାର ଦେଖାଯାଏ । ମରୁଭୂମିର ଭୂମିତଳ ଜଳ ଭଣ୍ଡାରରୁ ବେଳେବେଳେ ଏହି ଜଳ ଝରଣା ଆକାରରେ ଆସି ମରୁଦ୍ଵୀପମାନଙ୍କୁ ଜଳ ଯୋଗାଏ । ଯଦିଓ ମରୁଭୂମି ପୃଷ୍ଠଭାଗ ଜଳ ବିହୀନ, ଭୂମିତଳ ଜଳ ଯୋଗୁଁ ମରୁଭୂମି ରଠାଏ ଠାଏ ମରୁଦ୍ଵୀପମାନଙ୍କରେ ଜଳ ପାଇବା ସମ୍ଭବ ହୁଏ । ତେଣୁ ଉପରକୁ ପୃଷ୍ଠଭାଗ ଜଳ ବିହୀନ ଓ ଶୁଷ୍କ ଦେଖାଯାଉଥିବା ମରୁଭୂମିର ଗଭୀର ମାଟିତଳେ ଯେମିତି ଜଳ ଥିବାର ଦେଖାଯାଏ, ସେହିଭଳି ଉପରକୁ ଜଳ ବିହୀନ, ଶୁଷ୍କ ଦିଶୁଥିବା ଚନ୍ଦ୍ରର ଭୂମିତଳେ ଜଳ ଥିବାର ସମ୍ଭାବନା କଣ ନ ଯିବ କାହିଁକି ? ଚନ୍ଦ୍ରର ଭୂମିତଳେ ଯାହା କିଛି ଜଳ ଥିବ, ତାହାର ପରିମାଣ ଯେତେ ଅଳ୍ପ ହେଲେ ବି ଚନ୍ଦ୍ରମଣ୍ଡଳ ଅଧିବାସୀଙ୍କୁ ଏହା ଯୋଗାଇ ଦେବାରେ କୌଣସି ଅସୁବିଧା ହେବ ନାହିଁ । ଚନ୍ଦ୍ରର ଭୂମିତଳେ ଯେଉଁ ଜଳ ଥିବ ତାହା ତରଳ ଅବସ୍ଥାରେ ନ ଥାଇ କଠିନ ବରଫ ଅବସ୍ଥାରେ ରହିବା ଅଧିକ ସମ୍ଭାବନା । ତେଣୁ ଖଣି ଖୋଳି ପଥର କାଟିଲା ଭଳି ଏହି ଜଳଖଣିରୁ ପଥର ରୂପକ ବରଫ ଖଣ୍ଡକୁ କାଟି ଉପରକୁ ଆଣିବାକୁ ପଡ଼ିବ ।

ଏତଦ୍‌ବ୍ୟତୀତ ଚନ୍ଦ୍ରପୃଷ୍ଠର କେତେକ ପଥରରୁ ହାଇଡ୍ରୋକାରବନ୍ ଜାତୀୟ ଗ୍ୟାସ ମିଳିବାର ସମ୍ଭାବନା ରହିଛି । ଏହି ଗ୍ୟାସ ଓ ସିଲିକେଟ୍ ଜାତୀୟ ପଥରରେ ଥିବା ଅମ୍ଳଜାନ ଭିତରେ ରାସାୟନିକ ପ୍ରକ୍ରିୟା ସଙ୍ଘଟିତ କରାଇ କୃତ୍ରିମ ଉପାୟରେ ଜଳ ସୃଷ୍ଟି କରିବା ମଧ୍ୟ ବିଚିତ୍ର ନୁହେଁ ।

ଚନ୍ଦ୍ରର ଭୂମିତଳେ ଯଦି ଜଳ ନ ଥାଏ ଓ ଚନ୍ଦ୍ରର ପଥରରୁ ବୈଜ୍ଞାନିକ ଉପାୟରେ ଜଳକୁ ସୃଷ୍ଟି କରିବା ଯଦି ସମ୍ଭବପର ନ ହୁଏ ତେବେ ପ୍ରଥମରୁ ଚନ୍ଦ୍ର ଅଧିବାସୀଙ୍କ ପାଇଁ ପୃଥିବୀରୁ କିଛି ଜଳ ନିଆଯାଇ ସେମାନଙ୍କ ବ୍ୟବହାର ପାଇଁ ରଖାଯାଇପାରେ । ଚନ୍ଦ୍ରରେ ପାଞ୍ଚଶହ କି ହଜାରେ ଅଧିବାସୀଙ୍କର ମାତ୍ର କେଇଦିନ ଚଳିବା ପାଇଁ ଜଳ ପୃଥିବୀରୁ ନେଇଗଲେ, ସେତିକି ପରିମାଣର ଜଳ ସେମାନଙ୍କୁ ବର୍ଷ ବର୍ଷ ପାଇଁ ଚଳାଇ ନେବ । ତେବେ ଜଳର ବ୍ୟବହାର ନେଇ ଖୁବ୍ ସାବଧାନ ହେବାକୁ ପଡ଼ିବ । ବ୍ୟବହୃତ ଜଳ ଯେମିତି ଅଯଥାରେ ମାଟି ଭିତରକୁ ଶୁଖି ନ ଯାଏ, ସେଥିପ୍ରତି କଡ଼ା ବ୍ୟବସ୍ଥା ଗ୍ରହଣ କରିବାକୁ ପଡ଼ିବ ।

ଚନ୍ଦ୍ରପୃଷ୍ଠକୁ ଯେଉଁ ଜଳ ନିଆଯିବ, ତାହା ଚନ୍ଦ୍ର ବସତିର ଏକ ଜଳ ଭଣ୍ଡାରରେ ସାଇତା ଯିବ । ସେହି ଜଳଭଣ୍ଡାରରୁ ଜନବସତିର ପ୍ରତ୍ୟେକ ଘର, ଗାଧୁଆଘର, ପାଇଖାନା, ରୋଷାଇଘର ଆଦିକୁ ପାଇପ୍ ସାହାଯ୍ୟରେ ଜଳ ଯୋଗାଇ ଦିଆଯିବ । ଏହି ଜଳକୁ ବ୍ୟବହାର କରି ଚନ୍ଦ୍ରରେ ରହୁଥିବା ଲୋକେ ଖାଇବେ, ପିଇବେ, ଗାଧୋଇବେ, ଲୁଗାପଟା ଧୋଇବେ, ପାଇଖାନା ଯିବେ, ରୋଷାଇ କାମ କରିବେ ଇତ୍ୟାଦି । ଜଳର ବ୍ୟବହାର ହୋଇ ସାରିଲେ ଏହା ପୃଥିବୀସ୍ଥ ଜଳଭଳି, ନାଳବାଟେ ନର୍ଦ୍ଦମାକୁ ବହିଯିବାକୁ ଦିଆଯିବ ନାହିଁ । ଏହିଭଳି ଜଳ ଆଉ ବ୍ୟବହାର ଉପଯୋଗୀ ନୁହେଁ ବୋଲି ପୃଥିବୀ ପୃଷ୍ଠରେ ନଷ୍ଟକରି ଦିଆଯାଏ । ପୃଥିବୀରେ ସିନା ଜଳ ପ୍ରଚୁର, ଏହି ଜଳକୁ ନଷ୍ଟ କଲେ କିଛି କ୍ଷତି ନାହିଁ । କିନ୍ତୁ ଚନ୍ଦ୍ରରେ ଯେଉଁଠି ଜଳର ଏକାନ୍ତ ଅଭାବ, ସେଠି ଏହି ବ୍ୟବହୃତ ଜଳକୁ ନଷ୍ଟ କଲେ ଚଳିବ ନାହିଁ । ଚନ୍ଦ୍ର ଅଧିବାସୀମାନେ ରହୁଥିବା ପ୍ରତ୍ୟେକ ଘର, ଗାଧୁଆ ଘର, ପାଇଖାନା, ରୋଷାଇ ଘର, ଖାଇବା ଘର, ହୋଟେଲ, ରେଷ୍ଟୁରାଣ୍ଟ ଆଦିର ନାଳୁଆ ସବୁ ଗୋଟିଏ ଯାଗାରେ ଏକତ୍ରିତ ହୋଇଥିବାର ବନ୍ଦୋବସ୍ତ କରା ଯାଇଥିବ । ଜନବସତିର ସମସ୍ତ ଜଳ ଏହି ନର୍ଦ୍ଦମାରେ ସଂଗୃହୀତ ହେବ । ଏହି ନର୍ଦ୍ଦମା ପାଖରେ ଏକ ଜଳ ବିଶୋଧନ କାରଖାନା ବସାଯିବ । ଏହା ନର୍ଦ୍ଦମାର ଜଳକୁ ବିଶୋଧନ କରି ବିଶୁଦ୍ଧ ଜଳ ଭାବରେ ଜଳଭଣ୍ଡାରକୁ ପୁଣି ପଠାଇ ଦେଇପାରିବ ।

ସେହିଭଳି ଜନବସତିର ବାୟୁମଣ୍ଡଳରେ ଯେଉଁ ଜଳୀୟ ବାଷ୍ପ ସଂଗୃହୀତ ହେବ, ସେହି ଜଳୀୟ ବାଷ୍ପ ମଧ୍ୟ ପ୍ରତି ମୁହୂର୍ତ୍ତରେ ବାୟୁରୁ ଅଲଗା କରାଯାଇ ବିଶୁଦ୍ଧ ଜଳରେ ପରିଣତ କରାଯାଉଥିବ । ତା ଯଦି କରା ନ ଯାଏ, ତେବେ ଆବଦ୍ଧ ବାୟୁମଣ୍ଡଳରେ ଜଳୀୟବାଷ୍ପର ପରିମାଣ ଏତେ ବଢ଼ିଯିବ ଯେ ଲୋକମାନଙ୍କୁ ଅତ୍ୟନ୍ତ ଅସ୍ୱସ୍ତି ଲାଗିବ । ଲୋକମାନଙ୍କ ଚଳିବାରେ ଓ ଘରେ ରହିବାରେ ନାନା ଅସୁବିଧା ହେବ । ତେଣୁ ଏହି ସବୁ ବାଟରେ ଯେଉଁ ଜଳ ବ୍ୟବହୃତ ହୋଇ ନଷ୍ଟ ହୋଇଯାଇପାରେ, ସେହି ଜଳ ପୁଣି ଉଦ୍ଧାର କରାଯାଇ ବ୍ୟବହୃତ ହୋଇ ପାରିବ ।

ନର୍ଦ୍ଦମା, ପାଇଖାନା, ପରିସ୍ରାଗାରର ବ୍ୟବହୃତ ଜଳକୁ ଶୋଧନ କରି ପାନୀୟ ଜଳ ଭାବରେ ବ୍ୟବହାର କରିବାରେ ଅନେକେ ପକ୍ଷପାତୀ ନ ହୋଇପାରନ୍ତି ! ଏହି ଜଳ ଯେତେ ବିଶୁଦ୍ଧ ହେଲେ ବି ଏତେ ଘୃଣ୍ୟ

ହେବ୍ ଯେ ଏହାକୁ ଅନେକେ ବ୍ୟବହାର କରିବେନି ବୋଲି ଆଶଙ୍କା । କିନ୍ତୁ ଏହି ଆଶଙ୍କା ଯଥାର୍ଥ ନୁହେଁ । ଯାନ୍ତ୍ରିକ ପଦ୍ଧତି ବିନିଯୋଗକରି ଏହି ଅଶୁଦ୍ଧ ଜଳରୁ ଏତେ ବିଶୁଦ୍ଧ ଜଳ ପ୍ରସ୍ତୁତ କରାଯାଇପାରିବ ଯାହା କି ଇନ୍‌ଜେକ୍‌ସନ ଜଳ ଭାବରେ ବ୍ୟବହୃତ ହୋଇପାରିବ । ତେଣୁ ଏଭଳି ବିଶୁଦ୍ଧ ଜଳକୁ ଘୃଣା କରିବାର କୌଣସି କାରଣ ନାହିଁ । ପୁଣି ସେଠାକୁ ଯେଉଁମାନେ ପିବେ, ସେମାନେ ସେହି ଜଳ ପ୍ରତି ଘୃଣା ଦେଖାଇବା ଆଶା କରାଯାଇ ନ ପାରେ । କିଛି ଦିନ ତଳେ ରୁଷିଆ ଦେଶର କେତେଜଣ ମହାକାଶଚାରୀଙ୍କୁ ସେମାନଙ୍କ ପରିସ୍ରାରେ ଥିବା ଜଳକୁ ଶୋଧନ କରି ପାନ କରିବାକୁ ଦିଆଯାଉଥିଲା । ସେମାନେ ସେହି ଜଳକୁ ସାଦରେ ବିନା ଘୃଣାରେ ବ୍ୟବହାର କରିଥିଲେ, କୌଣସି ପ୍ରକାର ବିକାର ଦେଖାଇ ନ ଥିଲେ । ପୃଥିବୀ ପୃଷ୍ଠରେ ଏବେ ବି ଏଭଳି ସ୍ଥାନ ଅଛି ଯେଉଁଠାରେ ଲୋକେ ନର୍ଦ୍ଦମା ଜଳକୁ ଶୋଧନ କରି ବ୍ୟବହାର କରନ୍ତି । ସେ ସ୍ଥାନ ଅନ୍ୟ କେଉଁଠି ନୁହେଁ, ଖୋଦ୍ ଆମେରିକା ଭିତରେ । ଆମେରିକାରେ କାଲିଫର୍ଣ୍ଣିଆ ରାଜ୍ୟରେ ଏହା ସମ୍ଭବ ହୋଇଛି । କାଲିଫର୍ଣ୍ଣିଆରେ ଲୋକସଂଖ୍ୟା ଅନୁପାତରେ ଜଳ ଯୋଗାଣ ବ୍ୟବସ୍ଥା ଯଥେଷ୍ଟ ନୁହେଁ । ଲସଏଞ୍ଜେଲେସ ସହରର ସାନ୍ତାମନିକା ନିକଟବର୍ତ୍ତୀ ଏକ ସମୁଦ୍ର ଉପକୂଳ ଅଞ୍ଚଳରେ କୂଅ ଖୋଳିବାରୁ ଖାଲି ଲୁଣିଆ ପାଣି ବାହାରିଲା । ଜଳ ଅଭାବ ଯୋଗୁଁ ସେ ଅଞ୍ଚଳରେ ଘର କରିବାକୁ ଅନୁମତି ଦିଆଗଲା ନାହିଁ । ଲସଏଞ୍ଜେଲସ୍‌ର 'ସାନ୍ତାମନିକା' ସମୁଦ୍ର ଉପକୂଳ ଏକ ଆକର୍ଷଣୀୟ ସ୍ଥାନ । ପ୍ରତିବର୍ଷ ବହୁ ଲୋକ ଏ ସ୍ଥାନର ସୌନ୍ଦର୍ଯ୍ୟ ଯୋଗୁଁ ଏଠାକୁ ଅବସର ବିନୋଦନ ପାଇଁ ଆସନ୍ତି । କିନ୍ତୁ ଏଠାରେ ପାଣି ନାହିଁ । ପୁଣି ଲସଏଞ୍ଜେଲସ ସହରର ନର୍ଦ୍ଦମା ପାଣି ସମୁଦ୍ରରେ ପଡୁଥିବାରୁ ଏଠାକାର ଜଳବାୟୁ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର । ବର୍ତ୍ତମାନ ଚିନ୍ତା ହେଲା ଏଟି କଣ କରାଯିବ । ବୈଜ୍ଞାନିକମାନଙ୍କ ମୁଣ୍ଡରେ ବୁଦ୍ଧି ପଶିଲା ଯେ ସେମାନେ ଗୋଟିଏ ଶରରେ ଦୁଇଟି ପ୍ରାଣୀ ଶିକାର କରିପାରିବେ । ସାନ୍ତାମନିକାର ଜଳାଭାବ ଓ ଅସ୍ୱାସ୍ଥ୍ୟକର ପରିସ୍ଥିତି ଏକ-ସଙ୍ଗରେ ଦୂର କରିଦେବ । ଏହି ନର୍ଦ୍ଦମା ଜଳକୁ ବିଶୋଧନ କରି ପାନୀୟ ଜଳରେ ପରିଣତ କଲେ ସୁନ୍ଦର ସାନ୍ତାମନିକା ଆଉ ଅସ୍ୱାସ୍ଥ୍ୟକର ନ ହୋଇ ସ୍ୱାସ୍ଥ୍ୟକର ହେବ, ସେଥି ସଙ୍ଗେ ସଙ୍ଗେ ପାନୀୟ ଜଳକୁ ଯୋଗାଇ ସେଠାକାର ଜଳାଭାବ ମେଣ୍ଟା ଯାଇପାରିବ । ବୈଜ୍ଞାନିକମାନଙ୍କର ଗବେଷଣା ଚାଲିଲା । ତାଇପର ଆଧୁନିକ ପଦ୍ଧତି ପ୍ରୟୋଗ କରି ଏହି ନର୍ଦ୍ଦମା ଜଳକୁ ପାନୀୟ ଜଳରେ ପରିଣତ

କରାଗଲା । ନର୍ଦ୍ଦମା ଜଳରୁ ଯେଉଁ ଖଦଡ଼ା ଅଂଶ ବାହାରିଲା ତାହା ଉତ୍କୃଷ୍ଟ ଖତ ଭାବରେ କୃଷି କ୍ଷେତକୁ ଗଲା । ସାନ୍ତାମନିକାର ଏହି ନର୍ଦ୍ଦମା ଜଳ ଯୋଗୁଁ ଅସ୍ୱାସ୍ଥ୍ୟକର ପରିସ୍ଥିତି ଦୂର ହେଲା । ସେହି ଜଳରୁ ପ୍ରସ୍ତୁତ ପାମାସ୍ଥ ଜଳକୁ ବ୍ୟବହାର କରି ସେଠା ଅଧିବାସୀଙ୍କର ଜଳାଭାବ ମେଣ୍ଟିଲା ଗୃହବାସ ଭଲ ହେଲା । ସୁସଭ୍ୟ ଆମେରିକା ରାଜ୍ୟରେ ନର୍ଦ୍ଦମା ପାଣିରୁ ପ୍ରସ୍ତୁତ ଶୋଧିତ ଜଳକୁ ଯଦି ଲୋକେ ବିନା ଦ୍ୱିଧାରେ ପାନ କରି ପାରୁଛନ୍ତି, ଚନ୍ଦ୍ରଲୋକରେ ଯେ ଲୋକେ କାହିଁକି ତାହା କରି ନ ପାରିବେ ସେଥିରେ କିଛି କାରଣ ନାହିଁ । ପୃଥିବୀର ଲୋକମାନେ ଯଦି ସେଭଳି ଜଳକୁ ଘୃଣା କରି ନ ପାରିଲେ, ଚନ୍ଦ୍ରଲୋକରେ ଯେଉଁଠି ଜଳର ଏକାନ୍ତ ଅଭାବ, ସେଠି ଲୋକେ କାହିଁକି ଯେ ଘୃଣା କରିବେ, ତହିଁର କାରଣ କିଛି ଜଣାପଡ଼ୁ ନାହିଁ ।

ଚନ୍ଦ୍ରଲୋକରେ ବାୟୁସମସ୍ୟା ଓ ଜଳ ସମସ୍ୟାର ସମାଧାନ ସିନା ହୋଇଯିବ, କିନ୍ତୁ ଅସଲ ଖାଦ୍ୟ ସମସ୍ୟା ସମାଧାନ କଥା ମାତ୍ର ରହିଲା । ଅନେକେ ପଚାରି ପାରନ୍ତି ସେଠାରେ ପ୍ରାଣୀ କି ଉଦ୍ଭିଦ କିଛି ନାହିଁ । ଖାଦ୍ୟ ମିଳିବ କେଉଁଠୁ ?” ଏହା ନିଧାର୍ଯ୍ୟ ଯେ ଖାଦ୍ୟ ପାଇଁ ପ୍ରଥମରୁ ପୃଥିବୀ ଉପରେ ନିର୍ଭର କରିବାକୁ ପଡ଼ିବ ।

କାରଣ ଚନ୍ଦ୍ର ପୃଷ୍ଠରେ ପ୍ରାଣୀ କି ଉଦ୍ଭିଦ କେହି ନାହାନ୍ତି, ସେଠାରେ ଖାଦ୍ୟ ପଦାର୍ଥ ଆସିବ କୁଆଡ଼ୁ ? ସେମାନଙ୍କ ପାଇଁ ପୃଥିବୀରୁ ସିଝିମିତ ଖାଦ୍ୟ ପଦାର୍ଥ ପଠା ହେଉଥିବ । ଖାଦ୍ୟପଦାର୍ଥଗୁଡ଼ିକୁ ଖୁବ୍ ଥଣ୍ଡା କରି ସେହି ଥଣ୍ଡା ଜିନିଷକୁ ପଠାଇବାକୁ ପଡ଼ିବ । ପୃଥିବୀରୁ ଏହି ଖାଦ୍ୟ ଯୋଗାଣ ପ୍ରଥମ କେଇବର୍ଷ ପାଇଁ ଚାଲିପାରେ; କିନ୍ତୁ ଏହା ଯେ ସବୁଦିନ ପାଇଁ ଚାଲିବ, ତା ନୁହେଁ ।

ଧୀରେ ଧୀରେ ଚନ୍ଦ୍ର ଲୋକରେ ଯେତେବେଳେ ଲୋକସଂଖ୍ୟା ବୃଦ୍ଧି ପାଇବ, ସେତେବେଳକୁ ଖାଦ୍ୟ ପାଇଁ ପୃଥିବୀ ଉପରେ ନିର୍ଭର କରିବା ବିବେଚନାର ବିଷୟ ହେବନି । ଏତେ ଦୂରରୁ ମହାଶୂନ୍ୟ ଭଳି ଏଡ଼େ ଦୁର୍ଗମ ପଥଦେଇ ଖାଦ୍ୟପଦାର୍ଥ ବୋହିନେଇ ଚନ୍ଦ୍ରଲୋକରେ ଯୋଗାଇବା ବେଳକୁ ସେଠାରେ ଖାଦ୍ୟପଦାର୍ଥର ଦାମ ଅନେକ ବଢ଼ିଯାଇପାରେ । ତାଛଡ଼ା ଯଦି ଖାଦ୍ୟ ପଦାର୍ଥ ଠିକ୍ ସମୟରେ ଯାଇ ଚନ୍ଦ୍ର ଲୋକରେ ପହଞ୍ଚି ନ ପାରେ, ତେବେ

ଚନ୍ଦ୍ର ଅଧିବାସୀଙ୍କର ଦୁଃଖର ସୀମା ରହିବନି । ମନେକର, ଚନ୍ଦ୍ର ଲୋକରେ ଖାଦ୍ୟ ସରିଲା ବେଳକୁ ଯେଉଁ ଖାଦ୍ୟ ପଦାର୍ଥ ବୋହି ନେଇ ଆସୁଥିବା ରକେଟରେ କିଛି ଦୁର୍ଘଟଣା ଘଟିଲା । ଖାଦ୍ୟ ପଦାର୍ଥ ଚନ୍ଦ୍ର ପୃଷ୍ଠରେ ପହଞ୍ଚି ପାରିଲା ନାହିଁ । ସେ କ୍ଷେତ୍ରରେ ଚନ୍ଦ୍ରଲୋକରେ ଥିବା ଲୋକଙ୍କର ଦୁର୍ଦ୍ଦଶା କହିଲେ ନ ସରେ । ତେଣୁ ସେ ପରିସ୍ଥିତିରେ ଦୂରଦର୍ଶୀ ବୈଜ୍ଞାନିକମାନେ ମତ ଦିଅନ୍ତି, ଚନ୍ଦ୍ରଲୋକର ଅଧିବାସୀମାନେ ସବୁଦିନ ପାଇଁ ପୃଥିବୀ ଉପରେ ଖାଦ୍ୟ ପାଇଁ ନିର୍ଭର ନ କରି ଚନ୍ଦ୍ର ପୃଷ୍ଠରେ ଚାଷବାସ କରି ଖାଦ୍ୟ ଉତ୍ପାଦନ ପାଇଁ ଚେଷ୍ଟା କରିବା ଉଚିତ । ଏହା କ'ଣ ପ୍ରକୃତରେ ସମ୍ଭବ ହୋଇପାରିବ ?

ବର୍ତ୍ତମାନ ପର୍ଯ୍ୟନ୍ତ ଜଣାଯାଇଛି ଯେ ଚନ୍ଦ୍ର ପୃଷ୍ଠର ମାଟି ଖୁବ୍ ଉର୍ବର । କାରଣ ସେଠାରେ କେବେ ଚାଷବାସ କରା ହୋଇନି । ତେଣୁ ଏଭଳି ଉର୍ବର ମାଟିରେ ଚାଷ କଲେ ଖୁବ୍ ଭଲ ଫସଲ ହେବ । ତେବେ ଗୋଟିଏ ପ୍ରଶ୍ନ ହେଉଛି, ଚନ୍ଦ୍ରରେ ବାୟୁ ନାହିଁ, ଜଳର ଏକାନ୍ତ ଅଭାବ, ତେଣୁ ସେ ପରିସ୍ଥିତିରେ ଚନ୍ଦ୍ର ପୃଷ୍ଠରେ ଚାଷ କରିବା ସମ୍ଭବପର ହେବ କେମିତି ?

ମଣିଷ ଚାଷ କରିବାକୁ ବସିଲେ ଏଗୁଡ଼ିକ ଯେ ଗୋଟିଏ ଗୋଟିଏ ସମସ୍ୟା ହୋଇ ରହିବ, ତା' ନୁହେଁ । ବୈଜ୍ଞାନିକମାନେ ମତଦିଅନ୍ତି ଚନ୍ଦ୍ର ପୃଷ୍ଠରେ ବାୟୁ, ଜଳ ଆଦିର ଏକାନ୍ତ ଅଭାବ ଏହା ପୃଷ୍ଠରେ ଚାଷର ପ୍ରତିବନ୍ଧକ ହେବନି । ତେଣୁ ସେମାନଙ୍କ ଯୋଜନାନୁଯାୟୀ ଚନ୍ଦ୍ର ପୃଷ୍ଠରେ ମଣିଷ ବସତି ପାଇଁ ଯେମିତି ଗୋଟିଏ ଗୋଟିଏ ଉପଯୁକ୍ତ ସ୍ଥାନ ବାଛି ବସତି ସ୍ଥାପନ କରାଯିବା କଥା, ସେହିଭଳି ଚନ୍ଦ୍ର ପୃଷ୍ଠରେ ଗୋଟିଏ ଗୋଟିଏ ଉପଯୁକ୍ତ ସ୍ଥାନ ଦେଖି ଚାଷ ପାଇଁ ରଖିବା ଦରକାର । ପ୍ରଥମତଃ ଦେଖିନେବାକୁ ହେବ ଚନ୍ଦ୍ରରେ କେତେ ଅଧିବାସୀଙ୍କ ପାଇଁ ଚାଷ କରିବା ଦରକାର । ସର୍ବନିମ୍ନ କେତେ ଏକର ଜମି ଚାଷ କଲେ ଚନ୍ଦ୍ର ଅଧିବାସୀଙ୍କ ଖାଦ୍ୟ ସମସ୍ୟା ଦୂର ହୋଇଯିବ । ତାହା ଆଗ ନିର୍ଣ୍ଣୟ କରାଯାଇ ସେହି ଅନୁସାରେ ଚାଷ କରିବା ପାଇଁ ସ୍ଥାନ ବଛାଯିବା ଉଚିତ୍ । ଚନ୍ଦ୍ର ପୃଷ୍ଠରେ ଯେଉଁ ମୃତ ଆଗ୍ନେୟଗିରି ମୁଖ ମାନ ଅଛି, ସେହି ସବୁ ମୁଖର ମାଟି ଖୁବ୍ ଉର୍ବର । ତେଣୁ ସେହିଭଳି ସ୍ଥାନ ଚାଷ ପାଇଁ ବଛାଯିବା ଉଚିତ । ସେହି ସ୍ଥାନକୁ ଜନବସତି ସ୍ଥାନ ଭଳି ବଡ଼ ବଡ଼ ସ୍ୱଚ୍ଛ ପ୍ଲାଷ୍ଟିକ ଘୋଡ଼ଣୀ ଦିଆଯାଇ ଆବଦ୍ଧ କରାଯିବା ଦରକାର । ଏହା ହେଲେ ସେହି ଅଞ୍ଚଳଟି ଚନ୍ଦ୍ରର ଅନ୍ୟାନ୍ୟ ଅଂଶଠାରୁ ଅଲଗା ହୋଇଯିବ ।

ସେହି ସ୍ଥାନ ଭିତରେ ବାୟୁ ପ୍ରବାହ ଦେବେଲେ ଚନ୍ଦ୍ର ପୃଷ୍ଠର ସେହି ଅଂଶ ପୃଥିବୀ ପୃଷ୍ଠ ଭଳି ହୋଇଯିବ । ସେହି ସ୍ଥାନରେ ଗୃହବାସ କଲେ ଆଉ କିଛି ଅସୁବିଧା ହେବନି ।

ଗୃହ ହେଉଥିବା ଗଛ ପତ୍ରର ଅଭିବୃଦ୍ଧି ପାଇଁ ଅଙ୍ଗାରକାମ୍ଳ ଦରକାର । ତେଣୁ ଗୃହ ହେଉଥିବା ସ୍ଥାନକୁ ଲୋକ ରହୁଥିବା ସ୍ଥାନ ସହିତ ଭୂମିତଳ ସୁଡ଼ଙ୍ଗ ସାହାଯ୍ୟରେ ଯୋଗ କରି ଯାନ୍ତ୍ରିକ ସୁବିଧା ଖଞ୍ଜି ଦେଲେ ଜନବସତି ଅଞ୍ଚଳରେ ସୃଷ୍ଟି ହେଉଥିବା ଅଙ୍ଗାରକାମ୍ଳ ଗୃହ ହେଉଥିବା ସ୍ଥାନକୁ ଚାଲି ଯିବ । ସେଠି ଉଦ୍ଭିଦ ଏହି ଅଙ୍ଗାରକାମ୍ଳକୁ ନେଇ ଯେଉଁ ଅମ୍ଳଜାନ ସୃଷ୍ଟି କରିବ ତାହା ଜନବସତି ଅଞ୍ଚଳର ଲୋକଙ୍କ ପାଇଁ ଆବଶ୍ୟକ ହେବ । ଏହି ଉପାୟ ଅବଲମ୍ବନ କଲେ ଜନବସତି ଅଞ୍ଚଳର ଲୋକଙ୍କ ଅମ୍ଳଜାନ ଅଭାବ ଓ ଗୃହ ହେଉଥିବା ଅଞ୍ଚଳର ଅଙ୍ଗାରକାମ୍ଳ ଗ୍ୟାସର ଅଭାବ ଆଉ ରହିବନି । ଏହା ପୃଥିବୀ ପୃଷ୍ଠ ଭଳି ପ୍ରାକୃତିକ ଉପାୟରେ ସମାଧାନ ହୋଇଯିବ ।

ଜନବସତି ଅଞ୍ଚଳରୁ ଆବଶ୍ୟକ ସମୟରେ ଜଳ ଏହି ଗୃହ ଜମି ପାଇଁ ପଠାଇ ଦେଲେ ଆଉ ଅସୁବିଧା ହେବନି । ଏହି ଗୃହ ପାଇଁ ଯେଉଁ ଜଳ ଗଲା ତାହା ଯେ ସବୁଦିନ ପାଇଁ ନଷ୍ଟ ହୋଇଗଲା, ତାହା ଭାବିବା ଉଚିତ୍ ନୁହେଁ । କାରଣ ଏହି ଜଳ ଉଦ୍ଭିଦ ଭିତରକୁ ଯାଇ ଶ୍ୱେତସାର, ଶର୍କରା ରୂପରେ ରହିଯାଏ । ଏହି ଶ୍ୱେତସାରକୁ ଖାଇ ଆମେ ପୁଣି ସେହି ପରିମାଣର ଜଳକୁ ଫେରି ପାଉଁ । ତେଣୁ ଯେଉଁ ଜଳ ଏହି ଜନବସତି ଅଞ୍ଚଳରୁ ଗୃହ ଅଞ୍ଚଳକୁ ଯାଏ, ତାହା ପୁଣି ଗୃହ ଅଞ୍ଚଳରୁ ଧାନ, ଗହମ ଆକାରରେ ଜନବସତି ଅଞ୍ଚଳକୁ ଫେରିଆସେ । ତେଣୁ ପ୍ରକୃତରେ ଜଳର କିଛି ନଷ୍ଟ ହୁଏନି । ତେବେ ଗୃହ ହେଉଥିବା ଅଞ୍ଚଳରେ ଏ ଭଳି ସାବଧାନ ହେବାକୁ ପଡ଼ିବ, ଯେମିତି କି ଜଳ ଚନ୍ଦ୍ରର ଭୂମି ତଳକୁ ଅଯଥା ଚାଲି ନ ଯାଏ । ସେଥିପାଇଁ ନାନାପ୍ରକାର ଉପାୟ ରହିଛି, ଯେଉଁ ଉପାୟକୁ ଅବଲମ୍ବନ କଲେ ଭୂମି ଭିତରକୁ ଜଳ ଅଯଥା ଚାଲିଯିବ ନାହିଁ ବୋଲି ଆଶଙ୍କା ରହିବନି ।

ଆଉ କେତେକ ବୈଜ୍ଞାନିକ ମତ ଦିଅନ୍ତି ଯେ, ଚନ୍ଦ୍ରରେ ମୃତ୍ତିକାବିହୀନ କୃଷି, ଅଧିକ ଉପଯୋଗୀ ହେବ । ଏହି କୃଷିରେ ଭୂମି ବା ମାଟି ଦରକାର ନାହିଁ । ବଡ଼ ବଡ଼ ପାତ୍ରରେ ଜଳ ଓ ଉଦ୍ଭିଦ ଖାଦ୍ୟ ରଖି ସେଥିରେ ପନିପରିବା ଫଳ

ଆଦି ସବୁକିଛି ଚାଷ କରାଯାଇ ପାରେ । ବାୟୁପୂର୍ଣ୍ଣ ସ୍ୱଚ୍ଛ ପ୍ଲାଷ୍ଟିକ ଘୋଡ଼ଣୀ ତଳେ ଏଇସବୁ ବଡ଼ ବଡ଼ ପାତ୍ରକୁ ରଖି ଯନ୍ତ୍ରମତେ ଚାଷ କରାଯାଇପାରିବ । ଏହି ଚାଷରେ ଜଳ ନଷ୍ଟ ହୋଇଯିବାର ବା ଜଳ ଭୂମି ଭିତରକୁ ଚାଲିଯିବାର ଭୟ ନ ଥାଏ । ପୃଥିବୀରେ ଏହି ଧରଣର ଚାଷ ବେଶ୍ ଲୋକପ୍ରିୟ ହୋଇଛି । ତେଣୁ ଚନ୍ଦ୍ରରେ ଯେ କାହିଁକି ନ ହେବ, ସେଥିରେ କିଛି କାରଣ ନାହିଁ ।

ଆଜି କେତେକ ବୈଜ୍ଞାନିକଙ୍କ ମତ ଚନ୍ଦ୍ରପୃଷ୍ଠରେ ସାଂଶ୍ଲେଷିକ ଖାଦ୍ୟ ପ୍ରସ୍ତୁତ ସେଠାକାର ଖାଦ୍ୟ ସମସ୍ୟାର ପ୍ରକୃତ ସମାଧାନ କରିପାରିବ । ପୃଥିବୀରେ ହଜାର ହଜାର ବର୍ଷ ଧରି କୃଷି ହୋଇ ଆସୁଥିଲେହେଁ ବର୍ତ୍ତମାନର ଜନବହୁଳ ପୃଥିବୀକୁ କୃଷି ଖାଦ୍ୟ ଯୋଗାଇବାକୁ କ୍ଷମ ନୁହେଁ ବୋଲି ବହୁ ବିଶେଷଜ୍ଞ ଚିନ୍ତା କରିବାକୁ ଆରମ୍ଭ କଲେଣି । ସେମାନେ କହିଲେଣି, ଆଜି ଶହେ ବର୍ଷ ଭିତରେ ପୃଥିବୀରୁ ଗତାନୁଗତିକ ଚାଷ ପଦ୍ଧତି ଉଠିଯିବ । ପୃଥିବୀରେ କୃତ୍ରିମ ଭାବରେ କଳକାରଖାନାରେ ଯାବତୀୟ ଖାଦ୍ୟ ପ୍ରସ୍ତୁତ ହୋଇ ଲୋକମାନଙ୍କୁ ଯୋଗାଇ ଦିଆଯିବ । ଚନ୍ଦ୍ରର ଆବଦ୍ଧ ବାୟୁମଣ୍ଡଳର ଅଙ୍ଗାରକାମ୍ଳରୁ ଚିନି, ମଇଦା, ଅଟା, ଚାଉଳ ଆଦି ସୃଷ୍ଟି କରିହେବ । ଚନ୍ଦ୍ରପୃଷ୍ଠର ସହରରୁ ଯେଉଁ ଅଳିଆ ବାହାରିବ ସେଥିରୁ ତେଲ, ଘିଅ ଆଦି ସୃଷ୍ଟି ହୋଇପାରିବ । ସାମାନ୍ୟ କେତୋଟି ରାସାୟନିକ ପଦାର୍ଥରୁ ପ୍ରୋଟିନ୍, ଜୀବସାର ଓ ଧାତୁସାର ଆଦି ପ୍ରସ୍ତୁତ କରିହେବ । ଏହି ପ୍ରୋଟିନ୍‌ରୁ କୁକୁଡ଼ାମାଂସ, ଅଣ୍ଡା, ଦୁଧ ଆଦି ପ୍ରସ୍ତୁତ କରିବା କଷ୍ଟକର ହେବନି । ପୃଥିବୀରେ ଯଦି ସାଂଶ୍ଲେଷିକ ଖାଦ୍ୟ ପଦାର୍ଥ ବ୍ୟବହୃତ ହୋଇପାରିବ ତେବେ ଚନ୍ଦ୍ରର ଲୋକେ ସେ ଉପାୟରେ ଖାଦ୍ୟ ପ୍ରସ୍ତୁତ ନ କରି ଜଟିଳ ଚାଷ ପାଇଁ ଆଗଭର ହେବେ କାହିଁକି ? ଚନ୍ଦ୍ର ଜନବସତିରେ ଯେଉଁ ଅଙ୍ଗାରକାମ୍ଳ ଓ ଅଳିଆ ସୃଷ୍ଟି ହେବ, ସେ ସବୁ ସେଠାକାର ଲୋକଙ୍କୁ ଖାଦ୍ୟ ଯୋଗାଇ ପାରିବ । ଏକ ଦିଗରେ ଅଙ୍ଗାରକାମ୍ଳ ଓ ଅଳିଆ ସମସ୍ୟାର ସମାଧାନ ଓ ଅନ୍ୟ ଦିଗରେ ଖାଦ୍ୟ ସମସ୍ୟାର ସମାଧାନ ଏକ ସଙ୍ଗେ ହୋଇପାରିବ ।

ଚନ୍ଦ୍ରପୃଷ୍ଠରେ ଯଦି ଭୂମିତଳ ସହର ଓ ଘରଦ୍ୱାର ପ୍ରତିଷ୍ଠା କରାଯାଏ, ତେବେ ଭୂମିତଳ ଚାଷ ମଧ୍ୟ କରାଯାଇ ପାରିବ । ଏବେ କେନ୍ଦ୍ର ସୋଭିଏଟ୍ ରୁଷିଆର ଉଜେକିସ୍ତାନସ୍ଥ ସହର ନିକଟସ୍ଥ ଏକ ଆବଦ୍ଧ ଖଣି ଭିତରେ ଚାଷ କରାଯାଇପାରୁଛି । ଏହି ଖଣିଟି ଭୂପୃଷ୍ଠଠାରୁ ଦେଢ଼ହଜାର

ଫୁଟ ତଳେ ଅବସ୍ଥିତ । ଏହି ଗଭୀର ସ୍ଥାନରେ ଘନ ଅନ୍ଧକାର ଭିତରେ ଏକ ସୁନ୍ଦର ଫଳ ଓ ପନିପରିବା ବଗିଚ୍ଚ ସୃଷ୍ଟି କରାଯାଇଛି । ଏଠାରେ ପିଆଜ ଆମଦାନୀ ହେବାକୁ ମୋଟେ ପନ୍ଦର ଦିନ ସମୟ ନିଏ ଓ କାକୁଡ଼ି ସେମିତି ଅଧା ଦିନରେ ଫଳେ । ଏହି ଉଦ୍ୟାନ କୃତ୍ରିମ ବିଦ୍ୟୁତ୍ ଆଲୋକ ଦ୍ୱାରା ଆଲୋକିତ । ଆଲୋକ ପରିମାଣକୁ ବଢ଼ାଇ ଆମଦାନୀ ସମୟକୁ କମାଇ ଦିଆଯାଇପାରିଛି । ଏହି ପଦ୍ଧତି ଅବଲମ୍ବନ କରି ପୃଥିବୀପୃଷ୍ଠରେ ବର୍ଷକୁ ୨।୩ ଗୋଟି ଫସଲ ଆମଦାନୀ କରାଯାଉଥିବା ବେଳେ ଏଠାରେ ୪।୫ ଗୋଟି ଫସଲ ବର୍ଷକୁ ଆମଦାନୀ କରିହେଉଛି । ଚନ୍ଦ୍ରପୃଷ୍ଠରେ ଏହି ଭୂମିତଳ କୃଷି ସେଠାକାର ଖାଦ୍ୟ ସମସ୍ୟାକୁ ଖୁବ୍ ଦକ୍ଷତାର ସହିତ ସମାଧାନ କରିପାରିବ ବୋଲି ଆଶା । ଜଳ ଓ ବାୟୁର ଅଭାବ ମେଣ୍ଟିଗଲେ, ଦରକାର ହେବ କୃଷି ପାଇଁ ବିହନ । ଯେହେତୁ ଚନ୍ଦ୍ରରେ କଛି ଉଦ୍ଭିଦ ନାହିଁ; ତେଣୁ ସେଠି ବିହନ ଆଶାକରିବା ବୃଥା । ଚନ୍ଦ୍ରରେ କୃଷି ପାଇଁ ବିହନ ପୃଥିବୀରୁ ନେବାକୁ ପଡ଼ିବ । ଧାନ, ଗହମ, ମସୁର, ମଟର, ବାଇଗଣ, ଆଳୁ କୋବି, କଖାରୁ ଆଦିର ମଞ୍ଜି ଓ ବିହନ ନେଇ ଚନ୍ଦ୍ରରେ କୃଷି କଲେ ତା'ର ବିଚିତ୍ର ପରିଣତି ଉପୁଜିବାର କେତେକ ବୈଜ୍ଞାନିକ ଆଶଙ୍କା କରନ୍ତି । ସେମାନଙ୍କର ମତ, ଚନ୍ଦ୍ରର ମାଧ୍ୟାକର୍ଷଣଶକ୍ତି ପୃଥିବୀର ମାଧ୍ୟାକର୍ଷଣ ଶକ୍ତିର ଛଅ ଭାଗରୁ ଏକ ଭାଗ । ପୃଥିବୀର ମଞ୍ଜି ଯାହାକି ପୃଥିବୀର ମାଧ୍ୟାକର୍ଷଣଶକ୍ତି ସହିତ ସଂଶ୍ଳିଷ୍ଟ, ସେହି ମଞ୍ଜି ଯେତେବେଳେ ଚନ୍ଦ୍ରଲୋକ ଭୂମିରେ ଲଗାଯିବ ସେଥିରୁ ଯେଉଁ ଗଛ ଉତ୍ପନ୍ନ ହେବ ତାହା ପୃଥିବୀର ମାଟିରେ ବଢ଼ିଥିଲେ ଯେତିକି ବଢ଼ିଥାନ୍ତା, ଚନ୍ଦ୍ରର ମାଟିରେ ମାଧ୍ୟକର୍ଷଣଶକ୍ତି ପୃଥିବୀର ଛଅ ଭାଗରୁ ଭାଗେ ହୋଇଥିବାରୁ ପୃଥିବୀ ଅପେକ୍ଷା ଛଅ ଗୁଣ ଅଧିକ ବଢ଼ିବା କଥା ।

ପୃଥିବୀରେ ସେଇ ଗଛ ମାଧ୍ୟାକର୍ଷଣ ଶକ୍ତିରେ ଯେତେ ବଢ଼ିଥାନ୍ତା, ଚନ୍ଦ୍ରପୃଷ୍ଠରେ କମ୍ ମାଧ୍ୟାକର୍ଷଣ ଶକ୍ତି ହେତୁ ତା ଠାରୁ ଅଧିକ ବଢ଼ିବ ନାହିଁ କାହିଁକି ବୋଲି ସେମାନେ ଯୁକ୍ତି ବାଢ଼ନ୍ତି । ସେମାନଙ୍କ ହିସାବ ଅନୁଯାୟୀ ଧାନଗଛ ଯଦି ପୃଥିବୀରେ ୩।୪ ଫୁଟ ଉଚ୍ଚ ହେବ, ସେଇ ଧାନଗଛକୁ ଚନ୍ଦ୍ରପୃଷ୍ଠରେ ଲଗାଇଲେ ତାହା ୨୦।୨୫ ଫୁଟ ଉଚ୍ଚ ହେବ । ତାହାହେଲେ ପୃଥିବୀର ଯିଏ ଧାନଗଛ ତାହା ଚନ୍ଦ୍ରପୃଷ୍ଠରେ ବାଉଁଶ ଗଛ ଭଳି ଦେଖାଯିବ । ସେହିଭଳି ଗହମ ଗଛ ୧୫।୨୦ ଫୁଟ ଉଚ୍ଚ ହେବ । ମୂଳା

ଗଛ ହାରାହାରି ୧୪।୧୫ ଫୁଟ ଉଚ୍ଚ ହେବ । ସେହି ଅନୁସାରେ ସବୁଜାତିର ଗଛ ଚନ୍ଦ୍ର ପୃଷ୍ଠରେ ଆଶାତୀତ ଭାବରେ ବଢ଼ିଯିବ । ସେମାନେ କହନ୍ତି ଯେ ଚନ୍ଦ୍ର-ପୃଷ୍ଠରେ ଏହି ମଞ୍ଜି ଗୁଡ଼ିକୁ କ୍ରମାଗତ ଭାବରେ ଚାଷ କରାଗଲେ, ମଞ୍ଜିଗୁଡ଼ିକ ଚନ୍ଦ୍ରର ମାଧ୍ୟାକର୍ଷଣ ସହିତ ଧୀରେ ଧୀରେ ଅଭ୍ୟସ୍ତ ହୋଇଯିବ ଓ ସେଗୁଡ଼ିକଦ୍ୱାରା ସୃଷ୍ଟ ଗଛର ଆକାର କ୍ରମେ କମି କମି ପୃଥିବୀସ୍ଥ ଗଛର ଆକାର ସହିତ ସମାନ ହୋଇଯିବ । ଗଛଗୁଡ଼ିକ ଯେତିକି ବଡ଼ ହେବ, ସେହି ଅନୁସାରେ ସେଗୁଡ଼ିକର ଫଳ ମଧ୍ୟ ବଡ଼ ହେବ । ସେହିଭଳି ଧାନଗଛରେ ଧାନ ଗୋଟିଏ ଗୋଟିଏ ବରକୋଳି ଆକାରରେ ହେବ । ଆମ୍ବ ହେବ ଗୋଟିଏ ଗୋଟିଏ ଗୈଣୀ ଭଳି । ପୃଥିବୀରେ ଯେଉଁ ମଞ୍ଜିରୁ କାକୁଡ଼ି ହେବ ଫୁଟେ ଲମ୍ବ, ସେହି ମଞ୍ଜିରୁ କାକୁଡ଼ି ଚନ୍ଦ୍ରରେ ହେବ ଛଅଫୁଟ ଲମ୍ବ । ଗୋଟିଏ ଗୋଟିଏ କେରଟ୍ ହେବ ଆଠଫୁଟ ଲମ୍ବ । ମକ୍‌କା ହେବ ଗୋଟିଏ ଗୋଟିଏ ଛଅ ଫୁଟିଆ କାଠଖଣ୍ଡ ଭଳି । ଗୋଟିଏ ଗୋଟିଏ କଖାରୁ ହେବ ଗ୍ଲୋବ କୁଡ଼ିଆଟିଏ ଭଳି । ଚନ୍ଦ୍ରରେ ଏହିସବୁ ଫଳ ଓ ପନିପରିବା ଆକାରରେ ଏତେ ବଡ଼ ହେବ ଯେ ସେଗୁଡ଼ିକୁ ଖାଇବା ରୀତି ମଧ୍ୟ ବଦଳି ଯିବ । ଆମେ ପୃଥିବୀରେ କହୁଁ ସେ ଲୋକ ପାଏ ଗୁଣ୍ଡଳର ଭାତ ଖାଏ, ସମକେଇ ଲୋକ ପେଟକୁ କାହିଁକି ନା, ଅଧସେରେ ଗୁଣ୍ଡଳର ଭାତ ତାକୁ ନଅଣ୍ଟେ । କିନ୍ତୁ ଚନ୍ଦ୍ରରେ ଭାତଖିଆ ରୀତି ହେବ ଅଲଗା । ଚନ୍ଦ୍ରରେ ଭାତ ଖିଆଯିବ ସଂଖ୍ୟା ହିସାବରେ, ଅମକେଇ ଲୋକ ପାଞ୍ଚ ଗୋଟା ଭାତ ଖାଏ, ସମକେଇ ଲୋକ ପେଟକୁ କାହିଁକି ନା ସେ ପଚିଶ ଗୋଟା ଭାତ ଖାଇପାରେ । ଚନ୍ଦ୍ରରେ ଭାତ ଖାଇବା ରୀତି ପୃଥିବୀଠାରୁ ଏହିଭଳି ଭାବରେ ଅଲଗା ହେଲେ କେତେ ମଜା ଲାଗିବ, ଆଜିଠାରୁ ଧାରଣା କରିବା କଥା ।

ଚନ୍ଦ୍ରଲୋକରେ ଯଦି ଏହିସବୁ କୃଷିଜାତ ପଦାର୍ଥର ଆକାର ଏପରି ଭାବରେ ବୃଦ୍ଧି ପାଏ, ତେବେ ଅଳ୍ପ ଚାଷରେ ଅଧିକ ଲୋକ ଖାଇବାକୁ ପାଇବେ । ପୃଥିବୀପୃଷ୍ଠରେ ହେଉଥିବା ଗୋଟିଏ କଖାରୁକୁ ଯଦି ପାଞ୍ଚ ଜଣ ଲୋକଙ୍କୁ ଖାଇବାକୁ ଦୁଇଦିନ ଲାଗେ, ତେବେ ସେହି କଖାରୁ ଚନ୍ଦ୍ରଲୋକରେ ଫଳିଲେ ତାକୁ ତିରିଶ ଜଣ ଲୋକ ଦୁଇ ଦିନରେ ଖାଇବେ । ଏହିପରି ଭାବରେ ସବୁ ଖାଦ୍ୟପଦାର୍ଥର ଖର୍ଚ୍ଚ ମଧ୍ୟ କମିଯିବ । ପୃଥିବୀରେ ଯଦି ୧୦୦ ଜଣ ଲୋକଙ୍କୁ ଖାଦ୍ୟ ଯୋଗାଇବା ପାଇଁ ଛଅ ମାଣ ଜମି ଚଷିବା ଦରକାର ପଡ଼େ, ତେବେ ଚନ୍ଦ୍ରଲୋକରେ ୧୦୦ ଜଣ ଲୋକଙ୍କୁ ଖାଦ୍ୟ

ପାଇଁ ଏକମାଣ ଜମି ଚଷିଲେ ଯଥେଷ୍ଟ ହେବ । ଚନ୍ଦ୍ରଲୋକରେ ଖାଦ୍ୟପଦାର୍ଥ ପାଇଁ କୃଷ କରିବା ଯେମିତି ଦରକାର, ଦୁଧ, ଅଣ୍ଡା, ମାଂସ ପାଇଁ ସେମିତି ପ୍ରାଣୀମାନଙ୍କୁ ପୋଷିବା ଆବଶ୍ୟକ । କୃଷ ଜମି ଉପରେ ଫାର୍ମ କରି ଗୋରୁ, କୁକୁଡ଼ା ମଧ୍ୟ ପାଳନ କରାଯାଇପାରେ । ଫଳରେ ମାଂସ, ଦୁଧ, ଅଣ୍ଡା ଆଦିର ଅଭାବ ଚନ୍ଦ୍ରଲୋକରେ ରହିବନି ବୋଲି ଆଶା ।

ପୃଥିବୀର ମଣିଷ ଯଦି ଚନ୍ଦ୍ରଲୋକରେ ବଡ଼ ବଡ଼ ଗଛ ଓ ବଡ଼ ବଡ଼ ଫଳ ସୃଷ୍ଟି କରିପାରେ, ତେବେ ନବଜାତ ତଥା ଶିଶୁ ପ୍ରାଣୀମାନେ ମଧ୍ୟ ସେଇ ଅନୁସାରେ ସେଠି ଆଶାତୀତ ଭାବେ ବଡ଼ ବଡ଼ ହୋଇଯିବେ । ତିନିଫୁଟ ଉଚ୍ଚ ଧାନଗଛ ଯଦି ଚନ୍ଦ୍ରଲୋକରେ ଅଠର ଫୁଟ ଉଚ୍ଚ ହୁଏ, ତେବେ ଯେଉଁ ଶିଶୁ ଚନ୍ଦ୍ରଲୋକରେ ଜନ୍ମ ହେବ, ସେ ମଧ୍ୟ ଆକାରରେ ଛଅଗୁଣ ବଢ଼ି ଯିବ । ପୃଥିବୀରେ ନବଜାତ ଶିଶୁର ଉଚ୍ଚତା ଯଦି ଏକ ଫୁଟ ହୁଏ, ତେବେ ସେହି ଶିଶୁର ଉଚ୍ଚତା ଚନ୍ଦ୍ରଲୋକରେ ଛଅ ଫୁଟରୁ କମ୍ ହେବନି । ତେବେ ବର୍ତ୍ତମାନ ପ୍ରଶ୍ନ ହେଉଛି ପୃଥିବୀରୁ ଯଦି ଜଣେ ଦମ୍ପତି ଚନ୍ଦ୍ରଲୋକକୁ ଯାଆନ୍ତି, ସେଠାରେ ଯଦି ସେହି ସ୍ତ୍ରୀଟି ଅନ୍ତଃସତ୍ତ୍ୱା ହୁଏ, ତେବେ ସେ ଯେଉଁ ପିଲା ପ୍ରସବ କରିବ, ତାର ଉଚ୍ଚତା କଣ ଛଅ ଫୁଟ ହେବ ? ତା ଯଦି ହୁଏ ପାଞ୍ଚଫୁଟ ଉଚ୍ଚତା ବିଶିଷ୍ଟ ମା' ପେଟରେ ଛଅ ଫୁଟ ଲମ୍ବର ପିଲା କେମିତି ରହିବ ଚିନ୍ତା କରିବା କଥା ।" ହୋ ହୋ ହସରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ବକ୍ତୃତା-କକ୍ଷ କମ୍ପି ଉଠିଲା ।" ଏହି ଛଅଫୁଟ ପିଲା ଯେତେବେଳେ ବଡ଼ ହେବ, ତା ଉଚ୍ଚତା ପଇଁତିରିଶ ଛତିଶ ଫୁଟରୁ କମ୍ ହେବନି । ତେବେ ଏଭଳି ଲୋକକୁ ରାକ୍ଷସ ଛଡ଼ା ଆଉ କଣ କୁହାଯିବ ?

ଏହି ଦୃଷ୍ଟିରୁ ଦେଖିଲେ ଯେଉଁ ଲୋକମାନେ ଚନ୍ଦ୍ରଲୋକରେ ବସତି ସ୍ଥାପନ କରିବେ ସେମାନଙ୍କର ପିଲାମାନେ ମା' ପେଟରେ ଏତେବଡ଼ ହୋଇ-ଯିବେ ଯେ ଚନ୍ଦ୍ରପୃଷ୍ଠରେ କୌଣସି ମା' ସେମାନଙ୍କୁ ପେଟରେ ରଖିପାରିବେ କି ନାହିଁ ସନ୍ଦେହ, ପ୍ରସବ କରିବା ତ ଦୂରର କଥା । ଫଳରେ ମା' ମାନେ ପ୍ରସବ ପୂର୍ବରୁ ମରିଯିବେ । ତେଣୁ ଏଭଳି ଯଦି ପରିସ୍ଥିତି ହୁଏ ତେବେ କେଉଁ ସ୍ତ୍ରୀଲୋକ ଚନ୍ଦ୍ରଲୋକରେ ପିଲା ପ୍ରସବ କରିବାକୁ ସାହସ କରିବ ? ଅନ୍ତଃସତ୍ତ୍ୱା ହେବାର କେଇଦିନ ପରେ ମୃତ୍ୟୁ ଅନିବାର୍ଯ୍ୟ । ତେଣୁ ଏହି କାରଣ ଯୋଗୁ କୌଣସି ସ୍ତ୍ରୀଲୋକ ଚନ୍ଦ୍ରଲୋକକୁ ଯିବାକୁ ସାହସ କରିବେନି । ଯଦି କେହି

ଯାଆନ୍ତି, ତେବେ ସନ୍ତାନ ସନ୍ତତିର ମା' ହେବାକୁ ଚେଷ୍ଟା କରିବେନି । ତେଣୁ ଯେଉଁ ଦମ୍ପତି ଚନ୍ଦ୍ରଲୋକକୁ ଯିବେ ସେଠି ରହି ସନ୍ତାନ ସନ୍ତତି ବିନା ଚଳିବାକୁ ବାଧ୍ୟ ହେବେ । ଏହି ସନ୍ତାନ ସନ୍ତତି ଅଭାବରୁ ଚନ୍ଦ୍ରଲୋକରେ ବାସ କରୁଥିବା ଦମ୍ପତିମାନଙ୍କର ପାରିବାରିକ ଜୀବନ ଆନନ୍ଦମୟ ହେବନି । ନାନା ପାରିବାରିକ ଅଶାନ୍ତି ଭିତରେ ଚନ୍ଦ୍ରରେ ଗବେଷଣା କରିବା ବା ଅନ୍ୟ କୌଣସି କାମ୍ କରିବା କେତେଦୂର ସମ୍ଭବ, ତା ମଧ୍ୟ ବିଚାର କରାଯାଇ ପାରେ । ତେଣୁ ଯେଉଁ ଉଦ୍ଦେଶ୍ୟ ନେଇ ଚନ୍ଦ୍ରଲୋକରେ ବସତି ସ୍ଥାପନ କରିବା ପାଇଁ ଲୋକମାନେ ଯିବେ ସେ ଉଦ୍ଦେଶ୍ୟ ସାଧିତ ହେବାର ସମ୍ଭାବନା କେତେ କମ୍, ତାହା ଏଥିରୁ ସ୍ପଷ୍ଟ ଅନୁମେୟ ।

କିନ୍ତୁ ବୈଜ୍ଞାନିକମାନେ ଆଶା କରନ୍ତି ଚନ୍ଦ୍ରଲୋକରେ ସନ୍ତାନ ସନ୍ତତି ନେଇ ଯଦି ଏଭଳି ଅସ୍ୱାଭାବିକ ପରିସ୍ଥିତି ଉପୁଜେ, ତେବେ ଏଭଳି ଅସୁବିଧାକୁ ଦୂର କରିବା ବିଶେଷ କିଛି କଷ୍ଟକର ହେବନି । ଚନ୍ଦ୍ରଲୋକରେ ଯେଉଁ ସ୍ତ୍ରୀଲୋକମାନେ ସନ୍ତାନର ମା ହେବାକୁ ସ୍ଥିର କରିବେ, ସେମାନେ ସ୍ୱାମୀ ସହିତ ଏକ ଅଲଗା ପ୍ରକାର ଗୃହ ଭିତରେ ରହିବେ । ଯେଉଁ ଗୃହରେ କୃତ୍ରିମ ଉପାୟରେ ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ସୃଷ୍ଟି କରା ହୋଇପାରୁଥିବ ସେହି ଘରେ ସେମାନେ ସ୍ୱାମୀ ସହିତ ବସବାସ କରି ଅନ୍ତଃସତ୍ତ୍ୱା ହେବେ ଓ ପିଲା ଜନ୍ମ ହେବା ପର୍ଯ୍ୟନ୍ତ ସେଠି ରହିବେ । ଫଳରେ ସେମାନଙ୍କର ଯେଉଁ ପିଲା ହେବ ତାହା ପୃଥିବୀର ପିଲା ଭଳି ସାଧାରଣ ପିଲା ହେବ । କାରଣ ସେମାନେ ଯେଉଁ ଘରେ ଥିବେ, ସେହି ଘରର ଅବସ୍ଥା ଠିକ୍ ପୃଥିବୀ ଭଳି । ଚନ୍ଦ୍ରର କମ୍ ମାଧ୍ୟାକର୍ଷଣ ଶକ୍ତି ସେହି ଘରେ ନ ଥିବ । ତେଣୁ ସେଠି ରାକ୍ଷସ ସନ୍ତାନ ଜନ୍ମ ହେବାର ସମ୍ଭାବନା ରହିବ ନାହିଁ । ତା' ଛଡ଼ା ଚନ୍ଦ୍ରଲୋକରେ ରହିଥିବା ସ୍ତ୍ରୀଲୋକେ ପିଲା ଜନ୍ମ ପାଇଁ ଚନ୍ଦ୍ରଲୋକରେ ନ ରହି କିଛିଦିନ ପାଇଁ ପୃଥିବୀକୁ ବଦଳି ହୋଇ ଆସିଲେ କିଛି କ୍ଷତି ନାହିଁ । ଚନ୍ଦ୍ରରେ ସ୍ତ୍ରୀ ଲୋକମାନେ ଅନ୍ତଃସତ୍ତ୍ୱା ହେଲାକ୍ଷଣି ଯଦି ପୃଥିବୀକୁ ଚାଲିଆସନ୍ତି ତେବେ କୌଣସି ଭୟର ଅବକାଶ ରହିବନି । ତେଣୁ ଏହା ଯଦି ହୁଏ, ତେବେ ଚନ୍ଦ୍ରଲୋକକୁ କୌଣସି ସ୍ତ୍ରୀ ଲୋକ ଯିବାକୁ ଆଉ କୁଣ୍ଠିତ ହେବେନି ।

ଚନ୍ଦ୍ରରେ ଏକାଦିକ୍ରମେ ଦିନ ଚଉଦ ଦିନ ଓ ରାତି ଚଉଦ ଦିନ ହୋଇଥିବାରୁ ଚନ୍ଦ୍ରଲୋକରେ ଉଦ୍ଭିଦର ଅଭିବୃଦ୍ଧିରେ ଏହାର ପ୍ରଭାବ ଅନସ୍ୱୀକ

ପଡ଼ିପାରେ; କିନ୍ତୁ କୃତ୍ରିମ ଉପାୟରେ ସେହି ପ୍ରଭାବକୁ ଦୂର କରାଯାଇପାରେ । ତାହା ସତ୍ତ୍ୱେ ଯଦି ଆବୁରି କିଛି ପାର୍ଥକ୍ୟ ହୁଏ, ତେବେ ମଞ୍ଜିଗୁଡ଼ିକୁ କୃତ୍ରିମ ଉପାୟରେ ଚନ୍ଦ୍ର ଅବସ୍ଥା ଉପଯୋଗୀ କରି ସେଠାରେ ଚାଷ କରିବା ସମ୍ଭବ ।

ଚନ୍ଦ୍ରରେ ବାୟୁ, ଜଳ ଆଦି ନ ଥିଲେ ମଧ୍ୟ ସେଠାରେ କିପରି ଜନବସତି ଗଢ଼ିଉଠିବ, ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ଭବିଷ୍ୟତରେ ଯେଉଁମାନେ ଚନ୍ଦ୍ରଲୋକରେ ରହିବେ, ସେମାନେ ଉପରୋକ୍ତ ପ୍ରଣାଳୀରେ ସେଠି କୃଷିବାସ, ପଶୁପାଳନ କରି ନିଜର ଖାଦ୍ୟସମସ୍ୟାକୁ ସମାଧାନ କରିପାରିବେ । ଚନ୍ଦ୍ରରେ ଯେଉଁ ଲୋକମାନେ ରହିବେ, ସେମାନେ ସେଠି ନାନାପ୍ରକାର କଳକାରଖାନା ଚଳାଇବେ । କଳକାରଖାନାରେ ଚନ୍ଦ୍ରର ଭୂଗର୍ଭରୁ ଖଣିଜ ଉତ୍ତୋଳନ କରାଯାଇ ସେଥିରୁ ଧାତୁ ନିଷ୍କାସନ ଅଧିକ ସୁବିଧାଜନକ ଓ କମ୍ ଖର୍ଚ୍ଚସାପେକ୍ଷ ହେବ । ସେଠାକାର ଧାତୁରେ ପୃଥିବୀ ଭଳି ଗ୍ୟାସ କଣା ରହି ଧାତୁର ଗୁଣକୁ କମାଇଦେବନି । ସେ ଧାତୁ ଖୁବ୍ ବିଶୁଦ୍ଧ ହୋଇପାରିବ । ସେଇ ଧାତୁରୁ ରକେଟ ଆଦି ତିଆରି ହେବ ।

ରକେଟ ପାଇଁ ଇନ୍ଧନ ମଧ୍ୟ ଚନ୍ଦ୍ରପୃଷ୍ଠରେ ତିଆରି ହେବ । ତେଣୁ ଦୂର ମହାଶୂନ୍ୟ ଅଭିଯାନ ପାଇଁ ଯାହା ଯାହା ଦରକାର ଚନ୍ଦ୍ରଲୋକରେ ସବୁକିଛି ସୃଷ୍ଟି କରିବାକୁ ଚେଷ୍ଟା କରାହେବ । ଚନ୍ଦ୍ରଲୋକରେ ମହାଶୂନ୍ୟ ଅଭିଯାନ ପାଇଁ ରକେଟ କେନ୍ଦ୍ର ପ୍ରତିଷ୍ଠା କରାଯିବ । ସେହି କେନ୍ଦ୍ରରୁ ରକେଟ ବାହାରି ସୌରଜଗତର ଅନ୍ୟ ଗ୍ରହ, ଉପଗ୍ରହ ବା ଅନ୍ୟ ନକ୍ଷତ୍ର ଅଭିମୁଖେ ଯିବ । ଭବିଷ୍ୟତର ମହାଶୂନ୍ୟଯାତ୍ରୀମାନେ ଅଭିଯାନ ପୂର୍ବରୁ ଚନ୍ଦ୍ରରେ ଯାଇ ବସବାସ କରିବେ । ସେଠାରୁ ସେମାନେ ଅନ୍ୟ ଗ୍ରହ, ଉପଗ୍ରହକୁ ଯାତ୍ରା କରିବେ । ଆମେରିକାନ୍‌ମାନଙ୍କ ଏପୋଲୋ ପ୍ରୋଜେକ୍ଟର ଡିରେକ୍ଟର ଜେନେରାଲ ଫିଲିପ୍ସ ଏବେ ପ୍ରକାଶ କରିଛନ୍ତି ଯେ ଆମେରିକାନ୍‌ମାନେ ଆସନ୍ତା ପନ୍ଦର ବର୍ଷ ଭିତରେ ମଙ୍ଗଳ ଗ୍ରହରେ ଯାଇ ଅବତରଣ କରିପାରିବେ । ସେଥିପାଇଁ ସେମାନଙ୍କର ଯୋଜନା ଏ ଭିତରେ ଆରମ୍ଭ ହେବାର ଯୋଗାଡ଼ ଚାଲିଛି । ମଙ୍ଗଳ ଗ୍ରହରେ ଅବତରଣ କରିସାରିବା ପରେ ଅନ୍ୟ ଗ୍ରହ, ଉପଗ୍ରହକୁ ଯିବା ମଧ୍ୟ ଆମେରିକାନ୍‌ମାନଙ୍କ ପକ୍ଷରୁ ଚେଷ୍ଟା ଚାଲିବ । ଭବିଷ୍ୟତରେ ଏହି ସବୁ ଅଭିଯାନର କେନ୍ଦ୍ର ହେବ ଚନ୍ଦ୍ର

ଚନ୍ଦ୍ରଲୋକରେ କଳକାରଖାନା ଆଦି ବସିଗଲେ ସେଠି ଯାନବାହନ ଚଳାଚଳ କରାଇବାକୁ ପଡ଼ିବ ! ସୂର୍ଯ୍ୟ କିରଣରୁ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରିବା ସଙ୍ଗେ ସଙ୍ଗେ ଚନ୍ଦ୍ରରେ ଯଦି ଇଉରାନିୟମ, ଥୋରିୟମ ଆଦି ଧାତୁ ଥାଏ, ତେବେ ସେଥିରୁ ମଧ୍ୟ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରିବାକୁ ଚେଷ୍ଟା କରାଯିବ । ହିସାବରୁ ଯାହା ଜଣାଯାଏ, ଚନ୍ଦ୍ରରେ ଯେଉଁ ବିଦ୍ୟୁତ୍‌ଶକ୍ତି ଉତ୍ପନ୍ନ ହେବ, ତାହା ପୃଥିବୀଠାରୁ ଯଥେଷ୍ଟ ଶସ୍ତା ହେବ । ଆଜ ପରଠାରୁ ଷାଠିଏ ବର୍ଷ ଭିତରେ ଚନ୍ଦ୍ରଲୋକର ଅବସ୍ଥାରେ ଢେର ପରିବର୍ତ୍ତନ ଆସିବ, ଯାହାକି ଆଜିଠାରୁ ଏହିଭଳି ଭାବରେ କଳ୍ପନା କରାଯାଇପାରେ । ବୈଜ୍ଞାନିକମାନେ ଆଶାକରନ୍ତି, ଏମିତି କେତେଗୁଡ଼ିଏ କାରଖାନା ଅଛି ଯାହା ଚନ୍ଦ୍ରପୃଷ୍ଠରେ ବସାଇଲେ ଭଲ ହେବ । ନିମ୍ନ ତାପକ୍ରମୀୟ ଉତ୍ପାଦନ ପାଇଁ ଚନ୍ଦ୍ର ଏକ ଆଦର୍ଶ ସ୍ଥାନ । ପ୍ରତି ମାସରେ ଚନ୍ଦ୍ରରେ ଯେଉଁ ପନ୍ଦର ଦିନ ରାତି ହୁଏ ସେତେବେଳେ ଚନ୍ଦ୍ରର ତାପକ୍ରମ ଢେର କମିଯାଏ । ସେହି ନିମ୍ନ ତାପକ୍ରମରେ ନାନାପ୍ରକାର ଶିଳ୍ପୀୟ ପଦାର୍ଥ ଉତ୍ପାଦନ କରାଯାଇପାରେ । ବିଶେଷତଃ ଇଲେକ୍‌ଟ୍ରୋନିକ୍ କାରଖାନା ଆଦି କେତେକ କାରଖାନା ଚନ୍ଦ୍ରପୃଷ୍ଠରେ ବସାଗଲେ ଉନ୍ନତ ଧରଣର ପଦାର୍ଥ ପ୍ରସ୍ତୁତ କରାଯାଇପାରିବ, ଯାହା ପୃଥିବୀରେ ସମ୍ଭବ ନୁହେଁ । ଚନ୍ଦ୍ରଲୋକରେ ବାୟୁ ନ ଥିବାରୁ ସେଠି ଯେତେ ଉନ୍ନତ ଧରଣର ଟ୍ରାନ୍‌ଜିଷ୍ଟର ତିଆରି ହୋଇପାରିବ, ପୃଥିବୀରେ ହେବନି । ସେମିତି କେତେଗୋଟି କାରଖାନା ପୃଥିବୀପୃଷ୍ଠରୁ ସ୍ଥାନାନ୍ତରିତ ହୋଇ ଚନ୍ଦ୍ରଲୋକରେ ବସିବା ସମ୍ଭାବନାକୁ ମଧ୍ୟ ଏଡ଼ି ଦିଆଯାଇ ନ ପାରେ ।

ଅନେକେ ଭାବିପାରନ୍ତି, ଚନ୍ଦ୍ରଲୋକରେ ଆମୋଦ ପ୍ରମୋଦ ପୃଥିବୀ ଭଳି ହୋଇପାରିବ କି । କିନ୍ତୁ ଏପରି ଭାବିବା ଭୁଲ । ପୃଥିବୀରେ ଯେମିତି ସିନେମା ଦେଖାଯାଏ, ଚନ୍ଦ୍ରଲୋକରେ ମଧ୍ୟ ସେମିତି ସିନେମା ଦେଖାଯାଇ ପାରିବ । ଚନ୍ଦ୍ରର ଲୋକେ ପୃଥିବୀର ଠିକଣାଖି ଖବର ରଖିପାରିବେ । ଚନ୍ଦ୍ର ଓ ପୃଥିବୀ ଭିତରେ ରେଡିଓ ଓ ଟେଲିଭିଜନ ବାର୍ତ୍ତା ବିନିମୟ ହେଲେ, ଚନ୍ଦ୍ରର ଲୋକେ ପୃଥିବୀର ସବୁ ଖବର ରଖିପାରିବେ ଓ ପୃଥିବୀର ଲୋକେ ଚନ୍ଦ୍ରର ସବୁ ଖବର ପାଇପାରିବେ । ପୃଥିବୀର ଟେଲିଭିଜନ ସାହାଯ୍ୟରେ ଲୋକେ ଯେମିତି ଆମୋଦ-ପ୍ରମୋଦ କରନ୍ତି, ସେହି ଟେଲିଭିଜନ ଚିତ୍ରକୁ ଚନ୍ଦ୍ରଲୋକରେ ଦେଖି ସେଠାକାର ଲୋକେ ମଧ୍ୟ ଆମୋଦ-ପ୍ରମୋଦ ପାଇପାରିବେ ।

ଚନ୍ଦ୍ରଲୋକରେ କଳକାରଖାନା ବସିବା ସଙ୍ଗେ ସଙ୍ଗେ ଘରଦ୍ୱାର, ବିଜ୍ଞାନାଗାର ପର୍ଯ୍ୟବେକ୍ଷଣାଗାର, ହାଟ ବଜାର ସମେତ ବଡ଼ ବଡ଼ ସହର ଓ ରକେଟ୍ କେନ୍ଦ୍ରମାନ ପ୍ରତିଷ୍ଠିତ ହୋଇଯିବ । ଧୀରେ ଧୀରେ ଚନ୍ଦ୍ରଲୋକ ହେବ ପୃଥିବୀର ଏକ ଉପନିବେଶ । ପୃଥିବୀ ଓ ଚନ୍ଦ୍ର ଭିତରେ ସବୁଦିନେ ଯା'ଆସ ଚାଲିବ । ସେତେବେଳେ ଲୋକେ ଚନ୍ଦ୍ରଲୋକକୁ ନାନାଦି କଳ-କାରଖାନା ଓ ପର୍ଯ୍ୟବେକ୍ଷଣ ସୁବିଧା ପାଇବାପାଇଁ ଯିବେ ।

ଚନ୍ଦ୍ରଲୋକରେ ବାୟୁ ନ ଥିବାରୁ ଓ ବର୍ଷକର ଅଧେ ଦିନ ଏଠାରେ ଖୁବ୍ ନିମ୍ନ ଚାପକ୍ରମ ରହୁଥିବାରୁ ଚନ୍ଦ୍ରଲୋକରେ ଏମିତି କେତେ ଗବେଷଣା କରିହେବ, ଯାହାକି ପୃଥିବୀପୃଷ୍ଠରେ କରିହେବା ସମ୍ଭବ ନୁହେଁ ବା ଖୁବ୍ ବ୍ୟୟସାପେକ୍ଷ ହେବ । ତେଣୁ ଭବିଷ୍ୟତରେ ସେହିଭଳି ଗବେଷଣା ପାଇଁ ଚନ୍ଦ୍ରପୃଷ୍ଠ ହେବ ପ୍ରକୃଷ୍ଟ କ୍ଷେତ୍ର । ସେଥିପାଇଁ ଚନ୍ଦ୍ରପୃଷ୍ଠରେ ନୂଆ ନୂଆ ଗବେଷଣାଗାରମାନ ପ୍ରତିଷ୍ଠିତ ହେବା ଅସମ୍ଭବ ନୁହେଁ, ଯେଉଁଠାରେ ପୃଥିବୀର ଯୁବକ ଯୁବତୀମାନେ ଯାଇ ଗବେଷଣା କରିବେ ।

ଆମ ସୌରଜଗତରେ ନଅଗୋଟି ଗ୍ରହ ଥିବା କଥା ଆମେ ସମସ୍ତେ ଜାଣୁ, କିନ୍ତୁ ଆଧୁନିକ ବୈଜ୍ଞାନିକମାନେ ମତ ଦେଉଛନ୍ତି ଯେ ଆମ ସୌରଜଗତରେ ଆଉ ଗୋଟିଏ ଅଧିକା ଗ୍ରହ ଅଛି ଯାହା ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇପାରିନି । ଏହା ସୂର୍ଯ୍ୟଠାରୁ ସାତଶହ ଏକୋଇଶ କୋଟି ମାଇଲ ଦୂରରେ ଅଛି । ଏହା ହେଉଛି ଆମ ସୌରଜଗତର ଦଶମ ଗ୍ରହ । ପ୍ଲୁଟୋ ଗ୍ରହଠାରୁ ଏହା ଆହୁରି ବହୁତ ଦୂରରେ ଅଛି । ଜଣେ ମାର୍କିନ ବୈଜ୍ଞାନିକ ଏବେ ପ୍ରକାଶ କରିଛନ୍ତି ଯେ ଏହି ଗ୍ରହଟି ପ୍ରାୟ ଆବିଷ୍କୃତ ହେବା ଉପରେ । ଏହି ଗ୍ରହଟିକୁ ଆବିଷ୍କାର କରିବାରେ ବହୁ ବାଧା ଓ ଅସୁବିଧା ପୃଥିବୀପୃଷ୍ଠରେ ଅଛି । ଚନ୍ଦ୍ରଲୋକରେ ଯଦି ଗୋଟିଏ ପର୍ଯ୍ୟବେକ୍ଷଣାଗାର ପ୍ରତିଷ୍ଠା କରାଯାନ୍ତା, ତେବେ ଏହି ଅସୁବିଧା ଦୂର ହେବା ସଙ୍ଗେ ସଙ୍ଗେ ଏଭଳି ଅସଂଖ୍ୟ ସମସ୍ୟାର ସମାଧାନ କରିବା ସମ୍ଭବ ହୁଅନ୍ତା । ଏଥି ସଙ୍ଗେ ସଙ୍ଗେ ବିଶ୍ୱ ସମ୍ବନ୍ଧରେ ଆହୁରି କେତେ ନୂଆ ନୂଆ କଥା ଆବିଷ୍କାର ହୋଇ-ପାରନ୍ତା ।

ଭବିଷ୍ୟତରେ ଯେଉଁସବୁ ବଡ଼ ବଡ଼ ସୁପର ରକେଟ୍ ବାହାରିବାର ସମ୍ଭାବନା ଅଛି, ସେଥିରେ ଥରକେ ଶହ ଶହ ଲୋକ ଚନ୍ଦ୍ରଲୋକ

ଅଭିମୁଖରେ ଯାଇପାରିବେ, ଫଳରେ ଚନ୍ଦ୍ରଲୋକକୁ ଯିବା ଶସ୍ତା ହୋଇଯିବ, ବର୍ତ୍ତମାନ ଭଳି ଏତେ ଖର୍ଚ୍ଚସାପେକ୍ଷ ହେବନି । ଭବିଷ୍ୟତରେ ସେଠାକୁ ଲୋକେ ବିଲାତ ଆମେରିକା ଭଳି ଯିବେ । ଶୁଣାଯାଏ, ଆମେରିକାର ପାନ୍ ଆମେରିକାନ ଉଡ଼ାଜାହାଜ କମ୍ପାନି ଭବିଷ୍ୟତରେ ଚନ୍ଦ୍ରଲୋକକୁ ଯାତ୍ରୀ ନେବାଆଣିବା କରିବାର ଅନୁମତି ପାଇବାପାଇଁ ଚେଷ୍ଟା ଚଳାଇଛି ।

ଚନ୍ଦ୍ରପୃଷ୍ଠରେ ଖାଦ୍ୟପଦାର୍ଥ ଉତ୍ପନ୍ନ ହେଲେ ଆଜି ସେଠି କପେ ଚା'ର ମୂଲ୍ୟ ଦୁଇଲକ୍ଷ ଟଙ୍କା ହେବନି, କି ବଖତେ ଭାତ ଖାଇବା ପାଇଁ ତିରିଶ ଚାଳିଶ ଲକ୍ଷ ଟଙ୍କା ଦେବାକୁ ପଡ଼ିବନି । ପୃଥିବୀଭଳି ସେଠାରେ ମଧ୍ୟ ଖାଦ୍ୟଦ୍ରବ୍ୟ ଶସ୍ତା ହୋଇଯିବ । ଆମ ଜୀବଦ୍ଦଶା ଭିତରେ ଆମେ କାହାକୁ ଖୁସିରେ ଚନ୍ଦ୍ର ଭ୍ରମଣରେ ଯିବାର ନ ଦେଖିଲେହେଁ ଆମ ପରବର୍ତ୍ତୀ ବଂଶଧରମାନେ ଯେ ବିଲାତ ଆମେରିକା ଗଲାଭଳି ଶସ୍ତା ଓ ସୁବିଧାରେ ଚନ୍ଦ୍ରଲୋକକୁ ଯାଇ ସେଠାରେ କିଛିଦିନ କଟାଇ ଫେରି ଆସିପାରିବେ, ଏହା ଆଜିଠାରୁ କଳ୍ପନା କରିବାରେ କିଛି ଅଯୌକ୍ତିକତା ନାହିଁ ।"

ଘନଘନ କରତାଳିରେ ସଭାକକ୍ଷ କମ୍ପି ଉଠିଲା । ଅଧ୍ୟାପକ ପଟ୍ଟନାୟକଙ୍କର ଭାଷଣ ଖୁବ୍ ଉଚ୍ଚକୋଟୀର ବୋଲି ଶ୍ରୋତାମାନେ କୁହାକୁହି ହେବାର ଶୁଣାଯାଉଥିଲା । ଏହି ସମୟରେ ଜନୈକ ଶ୍ରୋତା ସଭା ମଧ୍ୟରେ ଠିଆହୋଇ ପଚାରିଲେ, "ଅଧ୍ୟାପକ ମହାଶୟ କହିବେ କି ଚନ୍ଦ୍ରଲୋକର ଅଧିବାସୀମାନେ ଜଳ ପାଇଁ ପୃଥିବୀ ଉପରେ ସଦାସର୍ବଦା ନିର୍ଭର କରିବେ କି କଅଣ ? କଦବା କେମିତି ଯଦି ଜଳର ଅଭାବ ପଡ଼ିଲା, ତେବେ ପୃଥିବୀରୁ ନେବା ଛଡ଼ା କ'ଣ ଅନ୍ୟ ଉପାୟ ସେମାନଙ୍କର ନାହିଁ ? ତା'ଛଡ଼ା ଚାଷପାଇଁ ଯେଉଁ ବିରାଟ ପରିମାଣରେ ଜଳ ଦରକାର ପଡ଼ିବ, ତାହାକୁ ଚନ୍ଦ୍ରଲୋକରେ ନିତ୍ୟ ବ୍ୟବହାର୍ଯ୍ୟ ପାଇଁ ଥିବା ଜଳ କ'ଣ ତୁଲାଇପାରିବ ?"

ଅଧ୍ୟାପକ କିଛି ସମୟ ଭାବି ଅତିମାତ୍ର ହୋଇ କହିଲେ, 'ତା ଅବଶ୍ୟ ବର୍ତ୍ତମାନ କହି ହେବନି । ଚନ୍ଦ୍ରଲୋକରେ ନ ରହିଲା ପର୍ଯ୍ୟନ୍ତ ଜଳର ଆବଶ୍ୟକତା ନେଇ ଆପଣଙ୍କ ପ୍ରଶ୍ନର ଯଥାର୍ଥ ଉତ୍ତର ଦେବା ସମ୍ଭବ ନୁହେଁ ।

ଏହି ସମୟରେ ସଭାଗୃହର ଅନ୍ୟ ଏକ ପାଖରୁ ଏକ ପାଗଳା ପିଲା ଉଠି ପାଟିକରି କହିଲା, "ମୁଁ ଦେଇପାରିବି, ମୁଁ ଦେଇପାରିବି । ସ୍ୱରଆଡ଼ ନିସ୍ତବ୍ଧ । ସମସ୍ତେ ପିଲାଟି ଆଡ଼କୁ ଅନାଇ ରହିଲେ । ପିଲାଟିର କଥା ଶୁଣି ସମସ୍ତେ ହୋ ହୋ ହସିଉଠିଲେ । କିଏ କେତେ ପ୍ରକାର ସମାଲୋଚନା କରିବାକୁ ପଛାଇଲେ ନାହିଁ । ପିଲାଟିକୁ ଥଟ୍ଟା କରିବାପାଇଁ ଆଉ କେତେକ କହିଲେ, "ହେଉ, ହେଉ ବସିଯାଅ, ବସିଯାଅ, ବାଳକ, ତୁମ ବିଦ୍ୟାବୁଦ୍ଧି ଆମକୁ ବେଶ ଜଣାଅଛି ! ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଆଉ ଅଧିକ ସୁନାମ କରନି" ଆଦି ପାଟିରେ ସଭାକକ୍ଷ କମ୍ପି ଉଠିଲା । "ତୁମ ବିଦ୍ୟାବୁଦ୍ଧି ବେଶ୍ ଜଣାପଡ଼ିଲାଣି । ଆଉ ଅଧିକ କହି ତୁମର ପାଗଳାମି ଦେଖାଅନି ବାଳକ !"

ସଭାମଧ୍ୟରେ ଏଭଳି ଗୋଳମାଳ ହେବାରୁ କୁଳପତି ନିଜେ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ଏତେ ବଡ଼ ବୈଜ୍ଞାନିକଙ୍କୁ ଏମିତି ଭାବରେ ପାଗଳଙ୍କ ଭଳି କଟୁ ସମାଲୋଚନା କରିବା କେଡ଼େ ନିନ୍ଦାର କଥା, ଭାବି ସେ ସ୍ଥିର ହୋଇ ବସିପାରିଲେନି ।

ଏହି ହୋ ହୋ ଭିତରେ ଅଧ୍ୟାପକ ପିଲାଟିକୁ ଉତ୍ତର ଦେବାକୁ ଉତ୍ସାହିତ କଲେ । ପିଲାଟି କମ୍ପିତ ଭୟମିଶ୍ରିତ ସ୍ୱରରେ କହିଲା, "ଜଣେ ମଣିଷ ପ୍ରତିଦିନ ଯେତିକି ଖାଦ୍ୟ ଓ ପାଣି ବ୍ୟବହାର କରେ ଓ ଯେତିକି ପରିସ୍ରା, ଝାଳ, ମଳ ତ୍ୟାଗ କରେ ସେଥିରୁ ଜଳୀୟ ଅଂଶମାନ ଯଦି ସଂଗ୍ରହ କରାଯାଏ ତେବେ ତାହା ସେ ପିଇଥିବା ପାଣିଠାରୁ ଯଥେଷ୍ଟ ବେଶି ହେବ । କାରଣ ଶ୍ୱେତସାର ଜାତୀୟ ଖାଦ୍ୟ ଶରୀରରେ ଜୀର୍ଣ୍ଣ ହୋଇଗଲେ ସେଥିରୁ ଜଳ ଉତ୍ପନ୍ନ ହୁଏ । ସେହି ଜଳ ଚନ୍ଦ୍ରପୃଷ୍ଠରେ ଜଳର ପରିମାଣ ବଢ଼ାଇବାରେ ସାହାଯ୍ୟ କରିବ ।

ଚନ୍ଦ୍ରଲୋକରେ ଚନ୍ଦ୍ରାଧିବାସୀମାନେ ଯେଉଁ ଶ୍ୱେତସାର ଓ ଚିନିଜାତୀୟ ଖାଦ୍ୟ ଖାଇବେ, ସେଥିରୁ ଯେଉଁ ପରିମାଣର ଜଳ ସୃଷ୍ଟି ହେବ ତାହା ବେଶ୍ ବିରାଟ । ହିସାବ କରି ଦେଖା ଯାଇଛି ଯେ ଜଣେ ଲୋକ ଯଦି ଦିନକୁ ହାରାହାରି ଏକସେର ଓଜନର ଭାତ, ରୁଟି, ଚିନି ଆଦି ଶ୍ୱେତସାର ଜାତୀୟ ଖାଦ୍ୟ ଖାଏ, ତେବେ ସେ ସେହି ଖାଦ୍ୟରୁ ଅନ୍ତତଃ ଅଧସେର ପାଣି ପରିସ୍ରା, ଝାଳ ଆକାରରେ ବାହାର କରିଦେବ । ଚନ୍ଦ୍ରପୃଷ୍ଠରେ ଆମେ ଯଦି ୫୦୦

ଲୋକଙ୍କୁ ରଖି ସେମାନଙ୍କୁ ଛଅ ମାସ ପାଇଁ ପୃଥିବୀରୁ ଖାଦ୍ୟ ନେଇ ଯୋଗାଉଁ, ତେବେ ସେମାନେ ଛଅ ମାସ ଭିତରେ ଏତେ ଜଳ ସୃଷ୍ଟି କରିବେ, ଯେଉଁ ଜଳ ୧୦୦ ଫୁଟ ଲମ୍ବ, ୫୦ ଫୁଟ ଓସାର ଓ ୧୦ ଫୁଟ ଗଭୀରର ଏକ ପୁଷ୍କରିଣୀକୁ ପୂର୍ଣ୍ଣ କରି ପାରିବ । ଏହି ପାଣି ୫୦୦ ଲୋକଙ୍କ ଚଳିବା ତଥା ଚାଷ କାମ ପାଇଁ କମ୍ ହେବନି । ତେଣୁ ପାଣି ପାଇଁ ଅଲଗା ଭାବରେ ପୃଥିବୀ ଉପରେ ନିର୍ଭର କରିବା ଆବଶ୍ୟକ ପଡ଼ି ନ ପାରେ ।"

ପିଲାଟିର ଉତ୍ତର ପରେ ସମସ୍ତେ ଅନାଇ ରହିଲେ ଅଧ୍ୟାପକ କ'ଣ ଉତ୍ତର ଦେବେ ଶୁଣିବା ପାଇଁ ।

ପିଲାଟିର ଉତ୍ତରକୁ ଅଧ୍ୟାପକ ମନେ ମନେ ଆଲୋଚନା କରିବାକୁ ଲାଗିଲେ । କିଛି ସମୟ ପରେ ଅଧ୍ୟାପକ ଉଠି ବଡ଼ ଚିନ୍ତାଶୀଳ ଭାବରେ କହିଲେ, "ବାସ୍ତବିକ୍ ପିଲାଟି ଯାହା ଉତ୍ତର ଦେଇଛି; ତାହା ବାସ୍ତବତା ଦୃଷ୍ଟିରୁ ଅଧିକ ସମୀଚୀନ । ପୃଥିବୀରୁ ଖାଦ୍ୟ ନେଇ ଚନ୍ଦ୍ର ଅଧିବାସୀଙ୍କୁ ଖାଇବାକୁ ଦେଲେ ଆମକୁ ସେତିକି ପରିମାଣର ଜଳ ମିଳିପାରିବ । ସେହି ଜଳକୁ ବାରମ୍ବାର ଚଳପ୍ରଚଳ କରାଇ ଚନ୍ଦ୍ରରେ ଚାଷପାଇଁ ଜଳାଭାବ ମେଣ୍ଟାଇହେବ । ଏତିକି ପାଣି ଚନ୍ଦ୍ର ପୃଷ୍ଠରେ ଥରକୁ ଥର ବିଶୋଧିତ ହେଲେ ଲୋକଙ୍କର ଜଳାଭାବ ରହିବନି । ଚନ୍ଦ୍ର ଅଧିବାସୀମାନଙ୍କୁ ସବୁ ଦିନ ପାଇଁ ପୃଥିବୀରୁ ଖାଦ୍ୟ ନ ଯୋଗାଇ ଏହି ଜଳ ସାହାଯ୍ୟରେ ଚନ୍ଦ୍ରରେ ଚାଷବାସକରି ସେଠାକାର ଖାଦ୍ୟାଭାବ ମଧ୍ୟ ମେଣ୍ଟାଯାଇ ପାରିବ ।"

ଘନ ଘନ କରତାଳିରେ ସଭାକକ୍ଷ କମ୍ପି ଉଠିଲା । ପିଲାଟିର ସାଥିମାନେ ତାକୁ କୋଳକରି ନାଚିବାକୁ ଲାଗିଲେ ।

ସଭା ପରେ ଅଧ୍ୟାପକ ଓ ସଭାପତି ଚାଲି ଆସୁଥିଲେ । ହଠାତ୍ ନିକଟରେ ସେହି ପିଲାଟିକୁ ଚାଲିଯାଉଥିବାର ଦେଖି ଅଧ୍ୟାପକ ତାକୁ ନିକଟକୁ ଡାକିଲେ । ପିଲାଟି ଆସିଲାରୁ ତାକୁ ସଙ୍ଗରେ ନେଇ ଅଫିସଘର ଆଡ଼କୁ ଗଲେ । ଅଧ୍ୟାପକ ପିଲାଟିକୁ ପାଖରେ ବସାଇ ପଚାରିଲେ, "ତୁମେ ଆଜି ଏହି ଯେଉଁ ଉତ୍ତରଟି ଦେଲ, ଏହା ତୁମ ମନରୁ ନା ଅନ୍ୟ କାହା'ଠାରୁ ଶୁଣିଥିଲ ?"

ଅଧ୍ୟାପକଙ୍କ କଥାରେ କିଞ୍ଚିତ ଭୟପାଇଯାଇ ପିଲାଟି କହି ପକାଇଲା, "ନାହିଁ, ମୋ ଅପା ଗତ କାଲି ସକାଳେ ଏଇ କଥା କହୁଥିଲା । ସେ ଆମକୁ

ଚନ୍ଦ୍ରରେ ଜନବସତି ସମ୍ଭାବନା ଉପରେ କହୁଁ କହୁଁ ଏଇ କଥାଟି କହିଥିଲା । ସେ ନାନା ଯୁକ୍ତି ଦେଖାଇ ପ୍ରତିପାଦନ କରିଥିଲା ଯେ ଏହି ଉପାୟରେ ସୃଷ୍ଟି ହୋଇଥିବା ବିରାଟ ପରିମାଣର ଜଳ ଚନ୍ଦ୍ରର ଜଳାଭାବ ଦୂର କରିବାରେ ଯଥେଷ୍ଟ ସାହାଯ୍ୟ କରିବ ।

ଏଭଳି ଏକ ଉତ୍ତର ସାମାନ୍ୟ ଜଣେ ଝିଅ ମୁହଁରୁ ବାହାରିଥିବାର ଶୁଣି ଅଧ୍ୟାପକ ଆଶ୍ଚର୍ଯ୍ୟ ନ ହୋଇ ରହିପାରିଲେନି । ସେ ମନେ ମନେ ଭାବିବାକୁ ଲାଗିଲେ, ତା'ହେଲେ କ'ଣ ଭାରତରେ ଖନା, ଲୀଳାବତୀଙ୍କ ଯୁଗ ଯାଇନାହିଁ ? ଏବେ ବି ଶ୍ୱଶୁରଙ୍କ ମୁଣ୍ଡକାଟ ଦଣ୍ଡରୁ ରକ୍ଷା କଲା ଭଳି ଝିଅବୋହୂ ଭାରତର ହାଣ୍ଡିଶାଳ-କୋଣରେ ପଡ଼ି ସଢ଼ୁଛନ୍ତି !

ଅଧ୍ୟାପକ ଥତମତ ହୋଇ କହିଲେ, "ତୁମର ସେହି ଅପାଙ୍କୁ ଭେଟିବାକୁ ମୋତେ ଟିକିଏ ସୁଯୋଗ ଦେଇପାରିବ ?"

"ଆସୁନାହାନ୍ତି ଆପଣ ମୋ ସହିତ ଆମ ଘରକୁ ବର୍ତ୍ତମାନ, ମୋ ଅପା ନିହାତି ଆପଣଙ୍କୁ ସାକ୍ଷାତ କରାଇଦେବି ।"

ଅଧ୍ୟାପକ କୁଳପତିଙ୍କଠାରୁ ବିଦାୟ ନେଇ ଗୁହଟି ସଙ୍ଗେ ସଙ୍ଗେ ଚାଲିଲେ ତାଙ୍କ ଘରକୁ । ବିଶ୍ୱବିଦ୍ୟାଳୟ ଗେଟ ପାରହେବାକୁ ସେ ଯାଉଛନ୍ତି, ହଠାତ୍ ଗୁହଟି "ଅପା, ଅପା" କହି ଦୌଡ଼ିଗଲା ସଡ଼କ ଉପରେ ଠିଆହୋଇଥିବା ଗୋଟିଏ ବଡ଼ କାର ଆଡ଼କୁ । କାର ଭିତରେ ଷ୍ଟିଅରିଂ ଧରି ବସିଥିଲେ ଜଣେ ଭଦ୍ରମହିଳା । ଅଧ୍ୟାପକଙ୍କୁ ତାଙ୍କ ଆଡ଼କୁ ଆସୁଥିବାର ଦେଖି ଭଦ୍ରମହିଳାଟି କାରରୁ ଓହ୍ଲାଇ ଅଧ୍ୟାପକଙ୍କ ଆଡ଼କୁ ଦୌଡ଼ିଲେ ।

କାରରୁ ଓହ୍ଲାଇ ସ୍ତ୍ରୀ ଅମିତା ଦେବୀ ନିଜ ଆଡ଼କୁ ଆସୁଥିବାର ଦେଖି ଅଧ୍ୟାପକ ବିସ୍ମିତ ହୋଇ ନିଜ ଆଖିକୁ ହଠାତ୍ ବିଶ୍ୱାସ କରିପାରିଲେ ନାହିଁ । ସେ ପ୍ରକୃତରେ ସ୍ୱପ୍ନ ଦେଖୁଛନ୍ତି କି ବାସ୍ତବତା ଭିତରେ ଥାଇ ସ୍ୱୟଂ ଅମିତା ଦେବୀଙ୍କୁ ଆଖି ସାମନାରେ ଦେଖୁଛନ୍ତି, ତାହା ଭାବି ଠିକ୍ କରିବା ତାଙ୍କ ପକ୍ଷରେ ଦୁରୂହ ହୋଇପଡ଼ିଲା । ସେ ହଠାତ୍ ପାଗଳଙ୍କ ଭଳି ଅମିତା ଦେବୀଙ୍କ ଆଡ଼କୁ ଦୌଡ଼ିଯାଇ ତାଙ୍କୁ କୁଣ୍ଢାଇ ପକାଇଲେ । ତାଙ୍କ ପାଟିରୁ ହଠାତ୍ ବାହାରିପଡ଼ିଲା, "ତୁମେ ଯେ ଏଠାରେ ମିତା !"

ଅଧ୍ୟାପକଙ୍କ ପ୍ରଶ୍ନର କ'ଣ ଉତ୍ତର ଦେବେ, ଅମିତା ଦେବୀ ସ୍ଥିର କରିପାରିଲେନି । ସେ ଅଧ୍ୟାପକଙ୍କୁ ନିକଟରେ ଦେଖି ଏତେ ଅଧୀର ହୋଇପଡ଼ିଥିଲେ ଯେ ତାଙ୍କ ଆଖିରୁ କେବଳ ଆନନ୍ଦାଶ୍ରୁ ହିଁ ବହିଆସୁଥିଲା ଅମାନିଆ ବନ୍ୟାଜଳ ଭଳି । ସ୍ୱାମୀ ତାଙ୍କର ପୂର୍ବ ସ୍ନେହସୋହାଗ ଫେରାଇଆଣି ତାଙ୍କୁ ଏଭଳି ଭାବରେ ଡାକିବେ ବୋଲି ସେ ସ୍ୱପ୍ନରେ ସୁଦ୍ଧା କେବେ ଆଶା କରି ନ ଥିଲେ ।

ଅଧ୍ୟାପକ ଅମିତା ଦେବୀଙ୍କ ଆଖିରୁ ଲୋତକ ସ୍ରୋତ ପୋଛିଦେଇ ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ଛି ମିତା, ତୁମେ ଯେ କାନ୍ଦୁଛ ! ମୁଁ ତୁମକୁ ଅବହେଳା କରି ଯେଉଁ ଅନ୍ୟାୟ କରିଛି ସେଥିପାଇଁ ମୁଁ ଚିରଲଜ୍ଜିତ ମିତା !" କହୁଁ କହୁଁ ଅମିତା ଦେବୀଙ୍କ ହାତ ଧରି ପକାଇ କହିଲେ, "କୁହ, କୁହ ମିତା, ତୁମେ ମୋ ଦୋଷ ପାଇଁ ମୋତେ କ୍ଷମା ଦେଇପାରିବ ?"

ଅମିତା ଦେବୀ ହଠାତ୍ ହାତ କାଢ଼ି ନେଇ କହିଲେ, "ହାଁ, ହାଁ, ଏ କ'ଣ କହୁଛ ତୁମେ ? ଛି, ଛି, ତୁମକୁ ମୁଁ ପୁଣି କ୍ଷମା ଦେବି !" ସଙ୍ଗେ ସଙ୍ଗେ ମୁଖରେ ହସ ଫୁଟାଇ ଡାକିଲେ ଅଦୂରରେ ଠିଆହୋଇଥିବା ସାନ ଭାଇ ମଣ୍ଟୁକୁ ।

ଅଧ୍ୟାପକଙ୍କ ସହିତ ଅପାର ଏଭଳି କଥାବାର୍ତ୍ତା ଦେଖି ଗୁହଟି ପୂର୍ବାପର କାଠ ପାଲଟିଗଲାଣି । ଅପା ଡାକରେ ସେ ଧୀରେ ଧୀରେ ଆସି ନିକଟରେ ଠିଆହେଲା । ଅପାର ଇଙ୍ଗିତରେ ସେ ଅଧ୍ୟାପକଙ୍କ ଗୋଡ଼ତଳେ ମୁଣ୍ଡିଆ ମାରିବାକୁ ଯାଉଛି, ହଠାତ୍ ଅଧ୍ୟାପକ ତାକୁ ତଳୁ ଉଠାଇନେଇ କହିଲେ, "ଓଃ ଏଇ ହେଉଛି ତୁମର ସେହି ବିଦୁଷୀ ଅପା, ଯାହାଙ୍କ ବାହୁ ବଳରେ ତୁମେ ଆଜି ସଭାରେ ଏତେ ବଡ଼ ତଥ୍ୟ ପ୍ରକାଶ କଲ !"

ଗୁହଟି ଲଜ୍ଜାରେ ଏତେ ମ୍ରିୟମାଣ ହୋଇପଡ଼ିଥିଲା ଯେ, ତା ପାଟିରୁ କିଛି ଭାଷା ବାହାରୁ ନ ଥିଲା ।

ସଭାରେ କ'ଣ ହେଲା ବୋଲି ଅମିତା ଦେବୀ ଅଧ୍ୟାପକଙ୍କୁ ପଚାରିଲେ । ଅଧ୍ୟାପକଙ୍କଠାରୁ ସମସ୍ତ ବିଷୟ ଶୁଣି ହସି ହସି କହିଲେ; "ହଁ, ସତେ ? ତୁମକୁ ସେ ଏତେ ଅପଦସ୍ତରେ ପକାଇଦେଲା ଆଜି ? କିନ୍ତୁ ସେ ଯେଉଁ ଉତ୍ତର ଦେଲା, ତାରି ବୁଝିବା ଉଚିତ ଥିଲା ଯେ ସେ ଉତ୍ତର ଦ୍ରୌପଦୀରେ

କାହାର ? ସେ ଉତ୍ତର ଯେ ମୋଟେ ମୋର ନିଜର ନୁହେଁ, ତାହା ତା'ର ବୁଝିବା ପ୍ରଥମରୁ ଉଚିତ ଥିଲା ।"

"ଆଁ, ସେ ଉତ୍ତର ତୁମର ନିଜର ନୁହେଁ ? କ'ଣ କହୁଛ ତୁମେ ?" ଆହୁରି ଆଶ୍ଚର୍ଯ୍ୟ ହୋଇ ପଚାରିଲେ ଅଧ୍ୟାପକ ।

"ହଁ, ସେ ଉତ୍ତର ମୋର ନିଜର ନୁହେଁ । ସେ ଉତ୍ତର ହିଁ ପ୍ରକୃତରେ ତୁମର । ତୁମେ ଦିନେ ସ୍ୱପ୍ନରେ ବାଲିବାଲେଇ ହୋଇ ସେହି ମତ ପ୍ରକାଶ କରିଥିଲ । ମୁଁ ତୁମଠାରୁ ଶୁଣି ସେହି କଥା ମନେ ରଖିଥିଲି । କାଲି ପିଲାଏ ମୋତେ ଗୁଡ଼େଇ ତୁଡ଼େଇ ସେହି ପ୍ରଶ୍ନଟି ପଚାରିବାରୁ ଅନନ୍ୟୋପାୟ ହୋଇ ତୁମର ସେହି ସ୍ୱାପ୍ନିକ ମତକୁ ପ୍ରକାଶ କଲି ନିଜକୁ ରକ୍ଷା କରିବା ପାଇଁ । ସେହି ମତକୁ ଦୃଢ଼ତାର ସହିତ ଉପସ୍ଥାପିତ କରିବା ପାଇଁ ନାନା ଯୁକ୍ତି ଦେଖାଇ ପ୍ରମାଣ କରିବାକୁ ଚେଷ୍ଟା କରିଥିଲି । ଆଜି ତୁମର ସେହି ସ୍ୱାପ୍ନିକ ମତ ଶେଷରେ ତୁମର ସମ୍ମାନରେ ହିଁ କ'ଣ କଣ୍ଟକ ହେଲା ?"

"ସେଥିପାଇଁ ମୁଁ ତିଳେମାତ୍ର ଦୁଃଖିତ ନୁହେଁ ମିତା । ଆଜି ଏତେ ଦିନ ପରେ ମୁଁ ଯେ ତୁମକୁ ଫେରି ପାଇଛି; ସେଇ ମୋର ଯଥେଷ୍ଟ ।'



ଅଧ୍ୟାପକ ଗୋକୁଳାନନ୍ଦ ମହାପାତ୍ରଙ୍କ ଅମର ଲେଖନୀର ନୂତନତମ ସୃଷ୍ଟି—

# 'ଶହେ ବର୍ଷ ପରେ'

**ଏକ ବୈଜ୍ଞାନିକ [illegible]**

ବୈଜ୍ଞାନିକ କଳ୍ପନାରେ '[illegible]' 'ଚନ୍ଦ୍ରର ମୃତ୍ୟୁ' ଆଦି ବିଶିଷ୍ଟ ବୈଜ୍ଞାନିକ ଉପନ୍ୟାସକୁ ବଳି ଯାଇଛି ।

ଆଧୁନିକ ବିଜ୍ଞାନ ଦ୍ରୁତବେଗରେ ଆଗେଇ ଚାଲିଛି । ପଚିଶ ବର୍ଷ ତଳେ ଯାହା ଥିଲା, ଆଜି ତା'ଠାରୁ ତେର ଆଗରେ । ଆଜିଠାରୁ ଶହେବର୍ଷ ପରେ ବିଜ୍ଞାନ ତଥା ମଣିଷ ସମାଜ ଆଗେଇ ଯାଇ କେଉଁଠି ଥିବ, କଳ୍ପନା କରିବା କଷ୍ଟକର ହେଲେହେଁ ବେଶ୍ ଆମୋଦଦାୟକ । ସେତେବେଳର ଲୋକେ ଚାଷବାସ ନ କରି ସାଇଣ୍ଟିଫିକ ପଦ୍ଧତିରେ ସବୁ ପ୍ରକାର ଖାଦ୍ୟ ପ୍ରସ୍ତୁତ କରିବେ । ଯାହା ବି କିଛି ଚାଷ କ୍ଷେତ ଥିବ, ତାହା ଭୂମି ଉପରେ ନ ହୋଇ ଭୂମି ତଳେ ଓ ସମୁଦ୍ରର ଗଭୀର ଜଳ ଭିତରେ କରାହେଉଥିବ । ଯାନ୍ତ୍ରିକ ଗାଈର ଦୁଧ ଓ ଯାନ୍ତ୍ରିକ କୁକୁଡ଼ା ଅଣ୍ଡା ପ୍ରାକୃତିକ ଗାଈ ଓ କୁକୁଡ଼ାର ବ୍ୟବହାର କମାଇ ଦେବ । ଲୋକେ ଚନ୍ଦ୍ରମଣ୍ଡଳରେ, ମହାଶୂନ୍ୟରେ, ଗଭୀର ସମୁଦ୍ର ତଳେ, ଓ ଭୂମି ତଳେ ସୁନ୍ଦର ସୁନ୍ଦର ସହର ଓ ଜନବସତିମାନ ପ୍ରତିଷ୍ଠା କରି ବସବାସ କରିବେ ।

ଲୋକମାନେ ଅଫିସ ଦପ୍ତରକୁ ଆଉ ମଟର ଗାଡିରେ ନ ଯାଇ ନିଜନିଜ ପୋଷାକ ସହିତ ଲଗିଥିବା ରକେଟଯାନ ସାହାଯ୍ୟରେ ଆକାଶରେ ଉଡ଼ି ଉଡ଼ି ଯିବା ଆସିବା କରିବେ । ସ୍ତ୍ରୀ ଲୋକେ ଆଉ ନିଜ ନିଜ ପେଟ ଭିତରେ ପିଲା ନ ବଢ଼ାଇ ଅଦ୍ଭୁତ ଧରଣର କାଚ ପାତ୍ରରେ ନିଜ ନିଜ ସନ୍ତାନମାନଙ୍କୁ ବଢ଼ାଇ ପାରିବେ, ଫଳରେ ଗର୍ଭଧାରଣ ଓ ଗର୍ଭବେଦନା ପୁରୁଣା କାଳିଆ ହୋଇଯିବ । ଯେ ଯେମିତି ରୂପ ଓ ଗୁଣର ପୁଅ କି ଝିଅ ଚାହିଁବ, ସେ ଠିକ୍ ସେମିତି ସୃଷ୍ଟି କରି ପାରିବ । ଭାଗ୍ୟକୁ ଆଦରିବା ଯୁଗ ଆଉ ନ ଥିବ । ସବୁ ପ୍ରକାର ରୋଗବ୍ୟାଧି ପୃଥିବୀରୁ ଉଭେଇ ଯାଇଥିବ । କଦବା କେମିତି ଯଦି କିଛି ରୋଗବ୍ୟାଧି ହେବ ତେବେ ଲୋକେ ଡାକ୍ତର ପାଖକୁ ନ ଯାଇ କମ୍ପ୍ୟୁଟର ଦ୍ୱାରା ଚିକିତ୍ସିତ ହେବେ । ଜରା ବାର୍ଦ୍ଧକ୍ୟ ଉଭେଇ ଯାଇଥିବ । ଲୋକେ ମନଇଚ୍ଛା ନିଜ ନିଜ ଯୌବନକୁ ଅତୁଟ ରଖିପାରିବେ । ସେ ଯୁଗର ମଣିଷ ସମାଜ ନେଇ ଏହିଭଳି ଅସଂଖ୍ୟ ନୂତନ କଳ୍ପନା ସଙ୍ଗେ ସଙ୍ଗେ ପ୍ରେମ, ବିରହ, ମିଳନ ଆଦିର ଅପୂର୍ବ ସମାବେଶରେ ଉପନ୍ୟାସଟି ଜୀବନ୍ତ ହୋଇ ଉଠିଛି । ଏଭଳି ଉପନ୍ୟାସ ଖାଲି ଓଡ଼ିଆ ଭାଷାରେ କାହିଁକି ଯେ କୌଣସି ଭାରତୀୟ ଭାଷାରେ ମଧ୍ୟ ବିରଳ । [illegible] ପାଠକମାନେ ଏହାର ପ୍ରକାଶ ତାରିଖକୁ ଅପେକ୍ଷା କରନ୍ତୁ ।